ପ୍ରକାଶନ- 1

# ଗ୍ରାମ୍ୟ ଟେକ୍ନୋଲୋଜୀ ଗାଇଡ




କାଉନସିଲ ଫର ଆଡ୍ଭାନ୍ସମେଣ୍ଟ ଅଫ ରୁରାଲ ଟେକ୍ନୋଲୋଜୀ
ଗୁରୁ ନାନକ ଫାଉଣ୍ଡେସନ ବିଲ୍ଡିଂ, ନୂଆ ଦିଲ୍ଲୀ-110067

# ମହାନିର୍ଦ୍ଦେଶକଙ୍କ ବାର୍ତ୍ତା

ପ୍ରିୟ ମହାଶୟ/ମହାଶୟା,

କେହି ଜଣେ କହି କହିଥିଲେ, "ଚିନ୍ତନ ଓ ସୃଜନ ମଧ୍ୟରେ ଏକ ବିରାଟ ଖାଇ ରହିଛି ।" ଗ୍ରାମାଞ୍ଚଳର ଉନ୍ନତି କଲେ ବୈଷୟିକ ଜ୍ଞାନର ଉଦ୍ଭାବନ ଏବଂ ବାସ୍ତବ କ୍ଷେତ୍ରରେ ତାହାର ଉପଯୋଗ ମଧ୍ୟରେ ଠିକ୍ ସେହିପରି ଏକ ବିରାଟ ଦୂରତା ରହିଛି । ଗ୍ରାମୀଣ ଜନସାଧାରଣଙ୍କ ମଧ୍ୟରେ ଏହି ଯଥାଯଥ ବୈଷୟିକ ଜ୍ଞାନର ପ୍ରଚାର ଓ ପ୍ରସାର ବ୍ୟବସ୍ଥା ସଙ୍ଗଠିତ ରୂପେ ହୋଇପାରି ନାହିଁ । ଅବ୍ୟବସ୍ଥିତ ଓ ଛିଟା ଛିଟା ପ୍ରଚାର ଆଦୌ ଫଳପ୍ରଦ ହୋଇ ପାରେନା । ଏହି ଉଦ୍ୟମକୁ ସଙ୍ଗଠିତ ସୁବ୍ୟବସ୍ଥିତ ଓ ଦ୍ରୁତ କାର୍ଯ୍ୟକାରୀ କରିବା ନିମନ୍ତେ କାଉନସିଲ ଫର ଆଡଭାନ୍ସମେଣ୍ଟ ଅଫ୍ ରୁରାଲ ଟେକ୍ନୋଲୋଜି (ସି. ଏ. ଆର. ଟି.) ଗଠାଯାଇଛି । ବିଗତ ଆଠ ମାସ ଧରି ଏହା କାର୍ଯ୍ୟ କରିବା ଆରମ୍ଭ କରିଛି ।

ଏହି କାଉନସିଲ୍ ଗ୍ରାମ୍ୟ ବୈଷୟିକ ଜ୍ଞାନ ଓ ତତ୍ସମ୍ପର୍କୀୟ ତଥ୍ୟର ବ୍ୟାଙ୍କ୍ ରୂପେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଏହି ଜ୍ଞାନର ବିତରଣ ଏବଂ ଉପଯୋଗ ଦ୍ୱାରା ମେସିନ୍, ଯନ୍ତ୍ରପାତି ଓ ଆନୁଷଙ୍ଗୀକ ଉପକରଣରେ ବହୁଳ ଉତ୍ପାଦନ କରିବାକୁ ଉଦ୍ୟମ ଆରମ୍ଭ କରିଛି ।

ଏହି ଲକ୍ଷ୍ୟକୁ ସାକାର କରିବା ନିମନ୍ତେ ପ୍ରଥମ ପଦକ୍ଷେପ ରୂପେ ବର୍ତ୍ତମାନ ଆମେ ଗ୍ରାମ୍ୟ ଟେକ୍ନୋଲୋଜି ବା ବୈଷୟିକ ତଥ୍ୟ ସମ୍ବଳିତ ଏକ ସଂକ୍ଷିପ୍ତ କୃତ ପ୍ରକାଶନ ଆରମ୍ଭ କରିଛୁ । ଇଚ୍ଛାକୃତ ଭାବେ ଆମେ ଏହାକୁ ସଂକ୍ଷିପ୍ତ ତଥା କ୍ଷୁଦ୍ର କଳେବର କରିଛୁ । ଏ ସମ୍ପର୍କୀୟ ବିଷୟବସ୍ତୁ ନିର୍ବାଚନ ମଧ୍ୟ ସହଜସାଧ୍ୟ ବ୍ୟାପାର ନୁହେଁ । ଖୁବ ସହଜ, ଅଳ୍ପ ଖର୍ଚ୍ଚ ବା ନାମକୁ ମାତ୍ର ଖର୍ଚ୍ଚ ହେଉଥିବା ବୈଷୟିକ କୌଶଳ ଯାହା ସମଗ୍ର ଦେଶର ଗ୍ରାମମାନଙ୍କରେ ଉପଯୋଗ ହୋଇ ପାରିବ, ପ୍ରଥମେ ଆମେ ସେହିଗୁଡ଼ିକ ବାଛି ନେଇଛୁ । କ୍ଷୁଦ୍ର ହିଁ ସୁନ୍ଦର ଓ କ୍ଷୁଦ୍ର ହିଁ ସମ୍ଭବ । ଏ ସମ୍ପର୍କରେ କେବଳ ଆମ ଦେଶର ନୁହେଁ, ଅନ୍ୟାନ୍ୟ ବିକାଶଶୀଳ ଦେଶମାନଙ୍କରେ ଉଦ୍ଭାବିତ ତଥା ବିକଶିତ ବିଭିନ୍ନ ବୈଷୟିକ ତଥ୍ୟଗୁଡ଼ିକ ବିଭିନ୍ନ ବ୍ୟାପକ କ୍ଷେତ୍ରରୁ ଚୟନ କରି ଏହି ସଙ୍କଳନ ପ୍ରସ୍ତୁତ କରିବା ନିମନ୍ତେ ପ୍ରଚେଷ୍ଟା କରାଯାଇଛି । କ୍ରମଶଃ ଦେଶର ବିଭିନ୍ନ ଭୌଗୋଳିକ ଭାଗକୁ ସୁହାଉଥିବା ଏବଂ ସେଠିକାର ଅଧିବାସୀଙ୍କୁ ବିଶେଷ ସାହାଯ୍ୟ କରିପାରୁଥିବା ବୈଷୟିକ ଉଦ୍ଭାବନଗୁଡ଼ିକୁ ଏକତ୍ର ପ୍ରକାଶନ ଲାଗି ଆମେ ଉଦ୍ୟମ କରିବୁ ।

ଏହି କ୍ଷୁଦ୍ର ପତ୍ରିକାରେ ସରଳ ସାବଲୀଳ ଭାଷାରେ ବିଭିନ୍ନ କଠିନ ବୈଷୟିକ ତଥ୍ୟଗୁଡ଼ିକ ପ୍ରକାଶ କରିବା ପାଇଁ ଆମେ ପ୍ରୟାସୀ ହୋଇଛୁ, ଯାହା ସର୍ବସାଧାରଣ ତଥା ଗ୍ରାମସେବକ ଏବଂ ଉନ୍ନୟନ କର୍ମୀମାନେ ବୁଝିବାକୁ ଓ କାର୍ଯ୍ୟକାରୀ କରିବାକୁ ସମର୍ଥ ହୋଇ ପାରିବେ । ବିଭିନ୍ନ ତଥ୍ୟଗୁଡ଼ିକୁ ସୁସ୍ପଷ୍ଟ କରିବା ଲାଗି ପାଠ୍ୟ ସହ ରେଖାଚିତ୍ର ଦେବା ପାଇଁ ଯଥାସାଧ୍ୟ ଉଦ୍ୟମ କରିଛୁ । ବିଭିନ୍ନ ପ୍ରକଳ୍ପର ମୂଲ୍ୟ ବର୍ତ୍ତମାନର ବଜାର ଦରରେ ଦିଆଯାଇଛି ।

ଜନସାଧାରଣ ଆବଶ୍ୟକ କରୁଥିବା ବିଭିନ୍ନ ବୈଷୟିକ ତଥ୍ୟଗୁଡ଼ିକ ଚୟନ କରି ସଂଗ୍ରହ କରିବା କେବଳ ଆମ ଦ୍ୱାରା ଏକପାଖିଆ ଭାବେ ସମ୍ଭବ ନୁହେଁ । ଏଥିପାଇଁ ଏସବୁର ଉପଯୋଗ କରିବା ଲାଗି ଆଗ୍ରହୀ ଜନସାଧାରଣ ଏବଂ ବିଭିନ୍ନ ବୈଷୟିକ କୌଶଳ ଉଦ୍ଭାବନ କରୁଥିବା ଅନୁଷ୍ଠାନଗୁଡ଼ିକର ସକ୍ରିୟ ସାହାଯ୍ୟ ଭିକ୍ଷା କରୁଛୁ । ଏଥିପାଇଁ ବିନା ଦ୍ୱିଧାରେ ଆମକୁ ଆପଣଙ୍କର ମତାମତ ପଠାନ୍ତୁ ।

ଏହି ପୁସ୍ତିକାଟି ସମସ୍ତ ମୁଖ୍ୟ ଭାରତୀୟ ପ୍ରାଦେଶିକ ଭାଷାଗୁଡ଼ିକରେ ପ୍ରକାଶ କରିବା ପାଇଁ ପ୍ରଚେଷ୍ଟା କରାଯାଉଛି ।

ଗ୍ରାମୀଣ ଟେକ୍ନୋଲୋଜି ସମ୍ପର୍କୀୟ ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶିତ ସମ୍ବାଦ ତଥା ପ୍ରବନ୍ଧର ସଙ୍କଳନ କରାଯାଇ ଏକ ଦ୍ୱିମାସିକ ାଣ କରିବା ଲାଗି ଆମେ ଉଦ୍ୟମ କରିଛୁ ।

ଏହି ପତ୍ରିକାର ସର୍ବୋଚ୍ଚ ଅଭିବୃଦ୍ଧି ପାଇଁ ଆମେ ପାଠକମାନଙ୍କର ପରାମର୍ଶ ଆହ୍ୱାନ କରୁଛୁ । ଏ ସମ୍ପର୍କରେ ସମସ୍ତ ଚିଠିପତ୍ର ୃ. ଦୁଆ, ଅଫିସର ଇନ୍ ଚାର୍ଜ ଅଫ୍ ଲାଇବ୍ରେରି ଆଣ୍ଡ ଡକ୍ୟୁମେଣ୍ଟେସନ ସର୍ଭିସେସ୍, କାଉନସିଲ ଫର ଆଡ୍ଭାନ୍ସମେଣ୍ଟ ଅଫ ଟେକ୍ନୋଲୋଜି, ଗୁରୁ ନାନକ ଫାଉଣ୍ଡେସନ୍ ବିଲଡ଼ିଙ୍ଗ, ନଉ ମେହେରୌଲି ରୋଡ, ନୂଆ ଦିଲ୍ଲୀ-110067 ଠିକଣାରେ ପଠାଇବା ଲାଗି ରୋଧ ।

ଡାଇରେକ୍ଟର ଜେନେରାଲ୍

# ସୂଚୀପତ୍ର

## ମହାନିର୍ଦ୍ଦେଶକଙ୍କ ବାର୍ତ୍ତା

# କାରର ବେକାର ଟାୟାର ଏକ ଉତ୍ତମ ଜୁଆଳି




ବଳଦ କାନ୍ଧରେ କାର ଟାୟାରର ଜୁଆଳି

# କାରର ବେକାର ଟାୟାର ଏକ ଉତ୍ତମ ଜୁଆଳି

## ବର୍ଣ୍ଣନା

ଗ୍ରାମାଞ୍ଚଳରେ ଭାର ମାଲବୁହା ଗାଡ଼ି ଟାଣୁଥିବା ପଶୁଗୁଡ଼ିକୁ ଏହି ଜୁଆଳି ବ୍ୟବହାର କରିବା ଦ୍ୱାରା ଯଥେଷ୍ଟ ପରିଶ୍ରମଜନିତ ଯନ୍ତ୍ରଣା ଲାଘବ ହୋଇ ପାରିବ । ଏହିସବୁ ଅଞ୍ଚଳରେ ଏ ଧରଣର ଗାଡ଼ି ଆଗାମୀ ବହୁବର୍ଷ ପର୍ଯ୍ୟନ୍ତ ବଦଳାଯିବା ସମ୍ଭବ ନୁହେଁ । କାରର ପୁରୁଣା ଟାୟାର ମଝିରୁ କାଟି ଦୁଇଖଣ୍ଡ କରି ଦିଆଯାଏ । ଦୁଇଟି ଅଧାକୁ ଖୋଲି, ଓଲଟା କରି ପୁଣି ଥରେ ଯୋଡ଼ି ଦିଆଯାଏ ଏବଂ ଟାୟାରର ଉଭୟ ପାର୍ଶ୍ୱରେ ଦୁଇଟି ଲେଖାଏଁ କଣାକରି ତାକୁ ବେକ ଚାରିପାଖେ ବାନ୍ଧି ଦିଆଯାଏ । ବେକର ତଳ ଭାଗରେ ବୋଲ୍ଟ ଓ ଟୋପିବାଲା ନଟ୍ ଲଗାଇ ଏହାକୁ କସି ଦିଆଯାଏ । ଏହାର ପାଖଗୁଡ଼ିକ ସିଲାଇ କରି ଠିକ୍ ଭାବେ ଏପରି ମୋଡ଼ି ଦିଆଯାଏ ଯେପରି ତାହା ଯଥା ସ୍ଥାନରେ ରହିବ ଏବଂ ହୁଗୁଳା ଯିବ ନାହିଁ ।

ଯଦି ଟାୟାର ହୁଗୁଳା ହୋଇଯାଏ ତେବେ ତାହା ପଶୁର ଚମଡ଼ା ଛିଲି ଉତ୍ତ୍ରାଇ ଦେବ । ଏହି ସମସ୍ୟାରୁ ରକ୍ଷା ପାଇବା ଲାଗି ଟାୟାରର ଚାରି ପାଖରେ ମୋଟାକନା ବା ଅଖା ବାନ୍ଧି, ଟାୟାର ସହ କାଠ ବା ଧାତବ ଯୋଡ଼ ପକାଯାଏ ଯଦ୍ୱାରା ଏହା ଯଥାସ୍ଥାନରେ ଲାଗି ରହେ ଓ ଘର୍ଷଣ ଫଳରେ ପଶୁର ଚମଡ଼ା ଛିଲି ହୋଇଯାଏ ନାହିଁ ।

**ମୂଲ୍ୟ** : ଅତି ନଗଣ୍ୟ

**ସମ୍ପର୍କ ସ୍ଥାପନ** : ସେଣ୍ଟର ଫର ଟ୍ରପିକାଲ
ଭେଟେରିନାରି ମେଡ଼ିସିନ୍
ଏଡ଼ିନବର୍ଗ ୟୁନିଭର୍ସିଟି
ଏଡ଼ିନବର୍ଗ
ୟୁନାଇଟେଡ୍ କିଙ୍ଗଡ଼ମ୍

# ପାଣି ଓ ସଡକରେ ଚାଲିପାରିବା ବାଇସାଇକଲ




ପାଣିରେ ସାଇକଲ ଚାଲୁଥିବାର ଦୃଶ୍ୟ

# ପାଣି ଓ ସଡକରେ ଚାଲିପାରିବା ବାଇସାଇକଲ

## ବର୍ଣ୍ଣନା

ଏକ ସାମାନ୍ୟ ଓ ସରଳ ପରିବର୍ତ୍ତନ କରି ଜଣେ ବାଇସାଇକଲ ଚାଳକ ସହଜରେ ଛୋଟ ନଦୀ ବା ପୋଖରୀ ସହଜରେ ଅତିକ୍ରମ କରି ପାରିବେ ।

ସାଇକଲଟି ପାଣି ଉପରେ ଭାସମାନ ଅବସ୍ଥାରେ ରହିବା ପାଇଁ ତାହାର ଉଭୟ ପାର୍ଶ୍ୱରେ ଦୁଇଟି ଟିଣ ତିଆରି ଭାସମାନ ଭେଲା ବା ପୋଣ୍ଟୁନ ସଂଯୋଗ କରି ଯାଇଥାଏ । ଚାରି ଫୁଟ ଲମ୍ବ ଓ ଏକ ଫୁଟ ଚଉଡ଼ାର ପୋଣ୍ଟୁନ ସାମନା ପଟକୁ ଯୋଡ଼ିଆ କରି ଯାଇଥାଏ ଏବଂ ଏହି ପୋଣ୍ଟୁନ ଆଗପଟରେ ସାଇକଲର ଫ୍ରେମ କ୍ଲାମ୍ପ ଓ ପଛରେ କ୍ୟାରିୟର ସହିତ ଯୋଡ଼ା ଯାଇଥାଏ । ଦୁଇଟି ବଲ ବିୟରିଙ୍ଗ ଓ 1'×0·5'ର ଟିଣ ବ୍ଲେଡ଼ କ୍ୟାରିୟର ସହିତ ସଂଯୋଗ ହୋଇଥାଏ । ପ୍ରପେଲର ଚଳାଇବା ନିମନ୍ତେ ଅନ୍ୟ ଗୋଟିଏ ଚେନ୍ ପେଡ଼ାଲ ଗିୟରକୁ ବ୍ୟାକ ଗିୟର ସହିତ ସଂଯୁକ୍ତ କରି ଯାଇଥାଏ । ଏହି ଚେନଟି ପରିବର୍ତ୍ତିତ ହୋଇ ସଡକ ଉପରେ ସାଇକଲ୍ ଚଳାଇବାରେ କାମ କରେ । ପାଣି ଭିତରେ ସାଇକଲର ଗତିପଥ ବଦଳାଇବା ପାଇଁ ହ୍ୟାଣ୍ଡେଲ ସହିତ କ୍ୟାରିୟର ପାଖରେ ଥିବା ରଡରକୁ ତାର ଦ୍ୱାରା ଯୋଡ଼ା ଯାଇଥାଏ । ପାଣିର ଗଭୀରତା ଅତି କମରେ ତିନି ଫୁଟ ରହିବା ଆବଶ୍ୟକ ।

ଯେଉଁ ଅଞ୍ଚଳରେ ଛୋଟ ଛୋଟ ନଦୀ ନାଳ ପରିପୂର୍ଣ୍ଣ ଅଥଚ କୌଣସି ପୋଲ ବା ଶଙ୍କ ନାହିଁ ସେହି ଅଞ୍ଚଳର ଗ୍ରାମଗୁଡ଼ିକ ସାମାନ୍ୟ ବର୍ଷା ଫଳରେ ଅଗମ୍ୟ ହୋଇପଡେ । ଏହିସବୁ ଅଞ୍ଚଳରେ ଏହି ଉଭୟଚର ବାଇସାଇକଲ ବରଦାନ ପ୍ରମାଣିତ ହୋଇ ପାରିବ ।

**ମୂଲ୍ୟ** : ସାଇକଲର ଦାମ ସହିତ ଆନୁମାନିକ ଖର୍ଚ୍ଚ 1150 ଟଙ୍କା

**ସମ୍ପର୍କ ସ୍ଥାପନ** : ଶ୍ରୀ ବି. କେ. ଦ୍ୱାରକା ପ୍ରସାଦ ଚୌରସିଆ
ଜିଲ୍ଲା : ମିର୍ଜାପୁର
ଉତ୍ତର ପ୍ରଦେଶ

# ବାଇସାଇକଲ (ହାତଟଣା) ମାଲବୁହା ଗାଡି



# ବାଇସାଇକଲ (ହାତଟଣା) ମାଲବୁହା ଗାଡ଼ି

## ବର୍ଣ୍ଣନା

ଏପରି ଗୋଟିଏ ମାଲବୁହା ଗାଡ଼ି ତିଆରି କରାଯାଇ ପାରିବ ଯାହା ହାତରେ ଟଣାଯାଇ ପାରିବ କିମ୍ବା ଗୋଟିଏ ବାଇସାଇକଲ ସହିତ ଯୋଡାଯାଇ ଚଳେଇ ହେବ । ଅର୍ଥାତ ଗୋଟିଏ ହାତଟଣା ମାଲବୁହା ଶଗଡ଼କୁ ସାଇକଲ ଟଣା ମାଲବୁହା ଶଗଡ଼ରେ ପରିଣତ କରି ହେବ । ଏହି ମାଲବୁହା ଗାଡ଼ିଟିକୁ ଅଳ୍ପ ସମୟ ମଧ୍ୟରେ ଓ ସହଜରେ ସାଇକଲ ସହ ଯୋଡ଼ି ହେବ କିମ୍ବା ଖୋଲି ହେବ ।

ଏହି ମାଲବୁହା ଗାଡ଼ିରେ ପ୍ରାୟ ଦଶ ଘନଫୁଟ ପରିମାଣର ବସ୍ତୁ ରଖାଯାଇ ପାରିବ ଏବଂ ଆନୁମାନିକ ତିନି କୁଇଣ୍ଟାଲ୍‌ର ମାଲ ବୁହାଯାଇ ପାରିବ । ଏହାର ଶମଗୁଡ଼ିକରେ ମାଇଲଡ୍ ଷ୍ଟିଲ ପ୍ଲେଟ୍ ବ୍ୟବହାର କରି ଅଧିକ ଓଜନର ମାଲ ପରିବହନ କରିହେବ । ଏହି ଗାଡ଼ି ବା ଟ୍ରଲିର ଲମ୍ବ 105 ସେ. ମି., ଚଉଡ଼ା 65 ସେ.ମି. ଓ ଉଚ୍ଚତା 40 ସେ.ମି. ରଖାଯାଇ ପାରେ ।

ଏଥିପାଇଁ ଆବଶ୍ୟକ ହେଉଥିବା ସମସ୍ତ ବସ୍ତୁ ସ୍ଥାନୀୟ ଭାବେ ମିଳି ପାରିବ ଏବଂ ସ୍ଥାନୀୟ କାରିଗରମାନେ ଏହାକୁ ତିଆରି କରି ପାରିବେ ।

**ମୂଲ୍ୟ** : ହାତଟଣା ମାଲବୁହା ଗାଡ଼ି ବା ଟ୍ରଲିର ଦାମ୍ 500 ଟଙ୍କା
ସାଇକଲ ସହ ଯୋଡ଼ିବା ଅଂଶର ଦାମ୍ 30 ଟଙ୍କା

**ସମ୍ପର୍କ ସ୍ଥାପନ** : ଏକ୍‌ଜ୍ୟୁକଟିଭ ଇଞ୍ଜିନିୟର କମ୍ୟୁନିଟି ପଲିଟେକନିକ ୱିଙ୍ଗ
ଥାପର ପଲିଟେକନିକ୍
ପାଟିଆଲା
ପଞ୍ଜାବ

# କାଠ ଚକ ଲଗା ଠେଲା



ମାଲ ବୋହିବା ସ୍ଥାନ
92 ସେ.ମି.
68 ସେ.ମି.
ହ୍ୟାଣ୍ଡଲ
ବ୍ରେକ୍
65 ସେ.ମି.
80 ସେ.ମି.
2
ସାମନା ପାର୍ଶ୍ୱର ଦୃଶ୍ୟ
2.5 ସେ.ମି.×25 ସେ.ମି.
×46 ସେ.ମି.
ଚକା
ଗୋଟିଏ ପାର୍ଶ୍ୱର ଦୃଶ୍ୟ




3
ହ୍ୟାଣ୍ଡଲ ସହିତ ସଂଯୁକ୍ତ ବ୍ରେକ୍

# କାଠ ଚକ ଲଗା ଠେଲା

## ବର୍ଣ୍ଣନା

ଆମ ଦେଶରେ ବିଶେଷ ଭାବେ ସ୍ତ୍ରୀ ଲୋକମାନେ ମୁଣ୍ଡରେ ଭାର ଥୋଇ ମାଲ ନେବା ଆଣିବା କାମ କରିଥାନ୍ତି । ଅଳ୍ପ ଦୂର ପର୍ଯ୍ୟନ୍ତ ମାଲ ନେବା ଆଣିବା କରିବା ପାଇଁ କାଠ ଚକା ଲଗା ଠେଲା ଗାଡ଼ି ଉପଯୋଗୀ ସିଦ୍ଧ ହୋଇ ପାରିବ । ନିମ୍ନରେ ବର୍ଣ୍ଣିତ କାଠ ଚକା ଲଗା ଠେଲା ଗାଡ଼ିର ଡିଜାଇନ ଖୁବ୍ ସରଳ ଓ ସହଜ । ଏହାର ବିଶେଷତ୍ୱଗୁଡ଼ିକ ନିମ୍ନରେ ବର୍ଣ୍ଣିତ ହେଲା—

— ଆବୁଡ଼ା ଖାବୁଡ଼ା ରାସ୍ତାରେ ଘର୍ଷଣଜନିତ ବାଧା ସୃଷ୍ଟି ନ କରି ଆରାମ୍‌ରେ ଚାଲିବା ପାଇଁ ଖୁବ୍ ବଡ଼ ଚକା **(65 ସେ.ମି.)** ବ୍ୟବହାର କରାଯାଏ ।

— ମାଲର ଓଜନ ବିଶେଷ ଭାବେ ଚକା ଉପରେ ପଡ଼େ ତେଣୁ ଚାଳକକୁ ବିଶେଷ ପରିଶ୍ରମ କରିବାକୁ ପଡେ ନାହିଁ ।

— ଅଣ ଓସାରିଆ ଓ ଆବୁଡ଼ା ଖାବୁଡ଼ା ରାସ୍ତାରେ ଗୋଟିଏ ଚକା ଦ୍ୱାରା ପରିବହନ ସହଜ ସାଧ୍ୟ ହୁଏ ।

— ପବନ ଭରା ଟାୟାର ବ୍ୟବହାର କରିବା ଅତୀବ ସୁବିଧାଜନକ, କିନ୍ତୁ ଉପଯୁକ୍ତ ସାଇକର ପବନ ଭରା ଟାୟାର ନ ମିଳିଲେ କାଠ ଚକା ବ୍ୟବହାର କରାଯାଇ ପରେ ।

ଏଥି ସହ ବ୍ରେକ୍ ମଧ୍ୟ ଲଗା ଯାଇଛି, ଯାହା ଦ୍ୱାରା ଗଡ଼ାଣିଆ ବା ଉଠାଣିଆ ରାସ୍ତାରେ ଚଳାଇବା ନିରାପଦ ଓ ସହଜ ହୋଇଥାଏ । ଏହା ତିଆରି କରିବା ସହଜ । ଗାଁର କମାର ଓ ବଢ଼େଇଙ୍କ ଦ୍ୱାରା ଏହି ଠେଲାଟି ତିଆରି କରି ହେବ ।

ମୂଲ୍ୟ : 200 ଟଙ୍କାରୁ 250 ଟଙ୍କା ମଧ୍ୟରେ

**ସମ୍ପର୍କ ସ୍ଥାପନ** : ଆପ୍ରୋପ୍ରିଏଟ୍ ଟେକ୍ନୋଲୋଜି ଡେଭଲପମେଣ୍ଟ ଆସୋସିଏସନ
ଗାନ୍ଧୀ ଭବନ
ପୋ: ଅ: ବକ୍ସ ନମ୍ବର 311
ଲକ୍ଷ୍ନୌ-226 001
ଉତ୍ତର ପ୍ରଦେଶ

# ଫଳ ତୋଳିବା ଉପକରଣ



ଡକୋଟି ଗଣ୍ଠି ଥିବା ବାଉଁଶ ନଅନ୍ତୁ



2

ଉପର ପାଖ ଗଣ୍ଠି କାଟି ଦଅନ୍ତୁ






3

ଛୁରୀ ଦ୍ୱାରା 6 ବା 8 ଫାଳ କରି କାଟନ୍ତୁ




4



5

ଗୋଟିଏ ଫଳ ତୋଳା ଉପକରଣର ଉପଯୋଗ କରାଯାଉଛି

# ଫଳ ତୋଳିବା ଉପକରଣ

## ବର୍ଣ୍ଣନା

ଖଣ୍ଡିଏ ଶ୍ରେଷ୍ଠ ବାଉଁଶ, ଯାହାର ପାଖାପାଖି ଚଉଦଟି ଗଣ୍ଠି ଥିବ ବାଛି ନିଅନ୍ତୁ । ପ୍ରଥମେ ଉପର ଗଣ୍ଠିଟି କାଟି ଦିଅନ୍ତୁ । ତାପରେ ଲମ୍ବ ଭାବେ ଦ୍ୱିତୀୟ ଗଣ୍ଠି ପର୍ଯ୍ୟନ୍ତ ବାଉଁଶଟିକୁ ଧିରେ ଧିରେ ଛଅ ବା ଆଠ ଫାଳ କରି କାଟନ୍ତୁ ଏବଂ ସେହି ଫାଳଗୁଡ଼ିକ ମଧ୍ୟରେ ଶ୍ରେଷ୍ଠ ଶ୍ରେଷ୍ଠ କଳା ଦେଇ ତାକୁ ମେଲାଇ ଦିଅନ୍ତୁ । ଏହା ଦ୍ୱାରା ବାଉଁଶର ଅଗ୍ର ଭାଗରେ ଏପରି ଏକ ସ୍ଥାନ ସୃଷ୍ଟି ହେବ ଯାହା ମଧ୍ୟରେ ସହଜରେ କୌଣସି ପ୍ରକାର ଦାଗ ନ ଲାଗି ଅକ୍ଷତ ଅବସ୍ଥାରେ ଗୋଟିଏ ସେଓ ବା ଆମ୍ବ ତୋଳାଯାଇ ପାରିବ । ବର୍ତ୍ତମାନ ଏହି ଉପକରଣଟିକୁ ଆପଣ ଆବଶ୍ୟକ କରୁଥିବା ଲମ୍ବର ବାଡ଼ି ବା ଠେଙ୍ଗା ଉପରେ ଲଗାଇ ଫଳ ତୋଳି ପାରିବେ ।

**ମୂଲ୍ୟ** : ଅତି ସାମାନ୍ୟ

**ସମ୍ପର୍କ ସ୍ଥାପନ** : ଆପ୍ରୋପ୍ରିଏଟ୍ ଟେକ୍ନୋଲୋଜି ଡେଭଲପମେଣ୍ଟ ଆସୋସିଏସନ
ଗାନ୍ଧୀ ଭବନ
ପୋ: ଅ: ବକ୍ସ ନମ୍ବର 311
ଲକ୍ଷ୍ନୌ-226 001
ଉତ୍ତର ପ୍ରଦେଶ

# ଉନ୍ନତ ପଥର ଘୋରଣା (ଚକି)

ପାରମ୍ପରିକ ଘୋରଣା ଚକ୍କ

ଉନ୍ନତ ଘୋରଣା ଚକ୍କ





1



1A



2



2A



3



3A



ପାରମ୍ପରିକ ଘୋରଣା ଚକ୍କର ସରଚନା

ନୂତନ ଘୋରଣା ଚକ୍କର ସରଚନା

# ଉନ୍ନତ ପଥର ଘୋରଣା (ଚକି)

## ବର୍ଣ୍ଣନା

ପାରମ୍ପରିକ ସାଧାରଣ ପଥର ଘୋରଣା ମଧ୍ୟରେ ଗୋଟିଏ ବଲ ବିୟରିଙ୍ଗ ଲଗାଇ (ଚିତ୍ର 1 ଏ ଦେଖନ୍ତୁ) ଉପର ପଥରର ଭାର ତଳ ପଥରର କ୍ଲାଲକ୍ ଉପରେ ରହନ୍ତୁ । ଏହା ଦ୍ୱାରା ଖୁବ୍ କମ୍ ଘର୍ଷଣ ହୁଏ ତେଣୁ ଅଳ୍ପ ପରିଶ୍ରମରେ ଚକ ଚଳାଯାଇ ପାରେ ।

ଏହି ଉନ୍ନତ ଚକରେ ଗୋଟିଏ ଲୁହାର କ୍ଲାଲକ ଓ ଏହି କ୍ଲାଲକ୍‌ର ଉପରିଭାଗ କନକେଭ କ୍ୟାଭିଟି ଆକାରର ହୋଇଥାଏ । ଗୋଟିଏ ଲୁହା ବଲ୍ ଏହି କ୍ୟାଭିଟି ବା ଖାଲ ମଧ୍ୟରେ ଭର୍ତ୍ତିକରି ଦିଆଯାଏ । ପାରମ୍ପରିକ ଘୋରଣାରେ ଉପର ଚକ ମଧ୍ୟରେ କାଠର ଖୋପ ଥିବାବେଳେ (ଚିତ୍ର-3 ଦେଖନ୍ତୁ ) ଏହାକୁ ହଟାଇ ଏହି ସ୍ଥାନରେ ଗୋଟିଏ ପେଚ ଦ୍ୱାରା ଫିଟ୍ କରାଯାଏ (ଚିତ୍ର 3 A ଦେଖନ୍ତୁ) ଯେହେତୁ ବଲ୍ ପିଭଟ ଉପରେ ସମସ୍ତ ଭାର ପଡ଼ିଥାଏ ସେହେତୁ ସାମାନ୍ୟ ପରିଶ୍ରମରେ ଉପର ଚକ ବୁଲିଥାଏ । ଉପର ପେଚ ପାଖରେ ଥିବା ଫାଙ୍କ ମଧ୍ୟ ଦେଇ ଶସ୍ୟ ଭର୍ତ୍ତି କରାଯାଇ ଚକ ବୁଲାଇବାକୁ ହୁଏ । ଉଭୟ ପଥର ମଧ୍ୟରେ ଥିବା ସ୍ଥାନକୁ ବିଭିନ୍ନ ଶସ୍ୟ ପାଇଁ କମ୍ ବେଶୀ କରିହୁଏ ।

**ମୂଲ୍ୟ** : ଏହି ପଦ୍ଧତିରେ ଆବଶ୍ୟକ ହେଉଥିବା ସମସ୍ତ ଉପକରଣର ମୂଲ୍ୟ ପ୍ରାୟ 10 ଟଙ୍କା ହେବ ।

**ସମ୍ପର୍କ ସ୍ଥାପନ** : ଡ଼ିପାର୍ଟମେଣ୍ଟ ଅଫ ସେରିଲ୍ସ ଆଣ୍ଡ ପଲସେସ୍ ଇଣ୍ଡଷ୍ଟ୍ରିଜ<br>
ଖଦୀ ଆଣ୍ଡ ଭିଲେଜ ଇଣ୍ଡଷ୍ଟ୍ରିଜ କମିଶନ<br>
ଇର୍ଲା ରୋଡ଼, ଭିଲେ ପାର୍ଲେ (ଓ୍ୱେଷ୍ଟ)<br>
ବମ୍ବେ-400 056<br>
ମହାରାଷ୍ଟ୍ର

# ଉନ୍ନତ ଦାଆ




ସମସ୍ତ ମାପ ସେ.ମି. ରେ ପ୍ରଦତ୍ତ ହୋଇଛି

# ଉନ୍ନତ ଦାଆ

## ବର୍ଣ୍ଣନା

ବହୁ କାଳରୁ କୃଷି କ୍ଷେତ୍ରରେ ଚଳି ଆସୁଥିବା ସାଧାରଣ ଦାଆର ଉନ୍ନତ ଘଟାଇ ଏହାର କାର୍ଯ୍ୟ କ୍ଷମତା ବୃଦ୍ଧି କରାଯାଇ ପାରିବ । ଗୁଜରାଟ କୃଷି ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଏପରି ଏକ ଉନ୍ନତ ଦାଆ ତିଆରି କରାଯାଇଛି, ଯାହା ଦ୍ୱାରା ପାରମ୍ପରିକ ତୁଳନାରେ ଶତକଡ଼ା 30 ଭାଗ ଅଧିକ କାର୍ଯ୍ୟ ଦକ୍ଷତା ବୃଦ୍ଧି କରାଯାଇ ପାରିବ ।

ଏହି ନୂତନ ଦାଆର ବିଶେଷତ୍ୱଗୁଡ଼ିକ ହେଲା—

— ଏହାର ଦାନ୍ତ ପାରମ୍ପରିକ ଦାଆ ତୁଳନାରେ ପାଞ୍ଚଗୁଣ ଅଧିକ ମଜବୁତ୍ ।

— ଏହାର ବେଣ୍ଟ ମଜବୁତ୍ ଭାବେ ଧରି ହେବ ।

— ଏହାର ଓଜନ କମ୍ ତେଣୁ ହାଲୁକା ଲାଗେ ।

— ଏହାର ମୋଡ଼ା ହୋଇଥିବା କୁନ୍ଦା ବା ଗୋଳ ସହଜରେ ଫଳକଟିକୁ ବେଣ୍ଟରୁ ଖୋଲି ଦିବାକୁ ଦିଏ ନାହିଁ ।

ଉନ୍ନତ ଦାଆ ତିଆରି କରିବା ଅତି ସହଜ ଓ ଗ୍ରାମର କମାର ଏହା ତିଆରି କରି ଦେଇ ପାରିବ । ଏଥିରେ ବିଭିନ୍ନ ପ୍ରକାର ମୋଟା ପତଳା ଫସଲ୍ କାଟି ହେବ ।

**ମୂଲ୍ୟ** : ଉନ୍ନତ ଦାଆର ଦାମ୍ ଆନୁମାନିକ 10 ଟଙ୍କା ପଡ଼ିବ ।

**ସମ୍ପର୍କ ସ୍ଥାପନ** : ଗୁଜରାଟ କୃଷି ବିଶ୍ୱବିଦ୍ୟାଳୟ
ସର୍ଦ୍ଦାର କୃଷି ନଗର
ଅହମଦାବାଦ୍ (ଗୁଜରାଟ)

# ଜିନିଷ ରଖିବା ଲାଗି ଝୁଲା ଥାକ



ପାରମ୍ପରିକ ଶିକା



ପ୍ରସ୍ତାବିତ ଜିନିଷ ରଖିବା ଲାଗି ଝୁଲା ଥାକ

# ଉନ୍ନତ କାହାଳି

## ବର୍ଣ୍ଣନା

ଦୈନନ୍ଦିନ ଜୀବନରେ ଆମେ ଦେଖିଥାଉଁ ଯେ ବୋତଲର ମୁହଁ ଓ କାହାଳିର ନାଡ଼ ଭିତରେ କୌଣସି ଫାଙ୍କ ବା ପବନ ବାହାରିବା ପାଇଁ ରାସ୍ତା ନଥାଏ । ବୋତଲ ଭିତରେ ଆବଦ୍ଧ ହୋଇ ରହିଥିବା ପବନର ଚାପ ଯୋଗୁଁ ତରଳ ପଦାର୍ଥ କାହାଳି ମଧ୍ୟ ଦେଇ ଶୀଘ୍ର ଭିତରକୁ ଯାଇପାରେ ନାହିଁ । ଅନେକ ସମୟରେ ତରଳ ପଦାର୍ଥ ବାହାରକୁ ଖେଳାଇ ହୋଇ ପଡ଼ିଯାଏ । ଅନେକ ଅନେକ କାଳରୁ ଆମେ ସମ୍ମୁଖୀନ ହେଉଥିବା ଏହି ସମସ୍ୟାଟିର ସମାଧାନ ହୋଇ ପାରିବ ଯଦି ଆମେ କାହାଳିଟିର ବୃନ୍ତ ପାଖରେ ଖାଲି ଡ଼ିପ ଫଳକ ସିଆର ସିଆର ତିଆରି କରିଦେବା । ଏହି ଖାଲି ଫଳକ ସିଆର ମଧ୍ୟ ଦେଇ ବୋତଲ ଭିତରେ ଆବଦ୍ଧ ପବନ ବାହାରକୁ ବାହାରିଯିବ ଏବଂ ବିନା ବାଧାରେ ତରଳ ପଦାର୍ଥ ଶୀଘ୍ର ବୋତଲ ମଧ୍ୟକୁ ପ୍ରବେଶ କରିପାରିବ । କାହାଳି ନିର୍ମାଣ କରିବା ସମୟରେ ଏହି ଫଳକ ଖାଲି ଡ଼ିପ ସିଆର ସହଜରେ ତିଆରି କରାଯାଇ ପାରିବ ।

ମୂଲ୍ୟ : ଅତି ସାମାନ୍ୟ

ସମ୍ପର୍କ ସ୍ଥାପନ : ଶ୍ରୀ ଏନ୍. ଭି. ଚନ୍ଦ୍ରଶେଖରନ
ଇଲେକ୍ଟ୍ରିକାଲ ଇଞ୍ଜିନିୟର
ଡେଭଲପମେଣ୍ଟ କନସଲଟାଣ୍ଟ (ପି) ଲିମିଟେଡ୍
40 ମାଉଣ୍ଟ ରୋଡ୍
ମାଡ୍ରାସ-600 006
ତାମିଲନାଡୁ

# ଉନ୍ନତ କାହାଳି









# ଜିନିଷ ରଖିବା ଲାଗି ଝୁଲା ଥାକ

## ବର୍ଣ୍ଣନା

ପାରମ୍ପରିକ ଶିକାରେ ଗୋଟିଏ ଲମ୍ବା ଦୁଇଟି ପାନ ରଖାଯାଇ ପାରେ । ଚିତ୍ରରେ ଯେପରି ଦେଖାଯାଇଛି ସେହିପରି ଡବା ବା ସ୍ୱରଗୋଟି ଟ୍ରେ ଏକଥ ଟ୍ରେଇ କରି ରଖିବା ବ୍ୟବସ୍ଥା କରି ଅଧିକ ଜିନିଷପତ୍ର ରଖାଯାଇ ପାରିବ । ଏହି ଟ୍ରେଗୁଡ଼ିକ କାଠରେ ତିଆରି ଏବଂ ଏଥିରେ ଆମ୍ବର ସାମ୍ନାରେ ଥିବା ଛିଦ୍ରରେ ଦଉଡ଼ି ଭର୍ତ୍ତି କରି ସେଗୁଡ଼ିକୁ ଟାଙ୍ଗି କରି ରଖିହେବ । ଟ୍ରେଗୁଡ଼ିକ ମଧ୍ୟରେ ଦୂରତ୍ୱ ଇଚ୍ଛାନୁଯାୟୀ ରଖାଯାଇ ପାରେ । ଗାଁର କାରିଗରମାନଙ୍କ ଦ୍ୱାରା ଏହା ତିଆରି କରାଯାଇ ପାରିବ ।

**ମୂଲ୍ୟ** : ଅତି ସାମାନ୍ୟ

**ସମ୍ପର୍କ ଜ୍ଞାପନ** : ଆପ୍ରୋପ୍ରିଏଟ୍ ଭିଲେଜ ଟେକ୍ନୋଲୋଜି ଫର ବେସିକ୍ ସର୍ଭିସେସ୍
ୟୁନିସେଫ୍
ଇଷ୍ଟର୍ଣ୍ଣ ଆଫ୍ରିକାନ୍ ରିଜିଓନାଲ୍ ଅଫିସ
ପୋ: ଅ: ବକ୍ସ 44145
ନାଇରୋବୀ
କେନିଆ

# ନଡିଆ କୋରଣା ଯନ୍ତ୍ର





ନଡ଼ିଆ କୋରା ଯାଉଛି

# ନଡ଼ିଆ କୋରଣା ଯନ୍ତ୍ର

## ବର୍ଣ୍ଣନା

ଏହି ନଡ଼ିଆ କୋରଣା ଯନ୍ତ୍ରଟି ତିନି ଭାଗରେ ବିଭକ୍ତ ଯଥା ଫ୍ରେମ୍, ବ୍ଲେଡ (କୋରଣା) ଓ ସ୍ୟାଡ଼ଲ (ବେଞ୍ଚ) । ଯନ୍ତ୍ରଟିର ଚାଳକ ଗୋଟିଏ ଚୌକି ବା ଟୁଲ୍ ଉପରେ ବସି କୋରଣାର ବେଞ୍ଚ ସହ ସଂଯୁକ୍ତ ଦଣ୍ଡିକୁ ଚାପି ପାଦରେ ବାନ୍ଧି, ପାଦ ଉପର ତଳ କରି ଯନ୍ତ୍ରଟି ଚଲାନ୍ତି । ଭଙ୍ଗା ନଡ଼ିଆ ଫାଳ କୋରଣା ସାମନାରେ ଆରାମରେ ଧରି ରଖାଯାଏ । କୋରଣାଟି ବୁଲିବା ସଙ୍ଗେ ସଙ୍ଗେ କୋରା ନଡ଼ିଆ ପାତ୍ରରେ ସଂଗୃହୀତ ହୋଇଥାଏ ।

ଯନ୍ତ୍ରଟିର ଚାଳକ ଯେପରି ଆରାମରେ ପାଦ ଉପର ତଳ କରି ପାରିବେ ସେହି ଅନୁସାରେ ବେଞ୍ଚ ଓ ପାଦ ସହ ସଂଯୁକ୍ତ ଦଣ୍ଡିର ଦୈର୍ଘ୍ୟ ସ୍ଥିର କରିବେ ।

ଏହି ନଡ଼ିଆ କୋରଣା ଯନ୍ତ୍ରଟି ଗ୍ରାମର ସ୍ଥାନୀୟ କାରିଗରଙ୍କ ଦ୍ୱାରା ତିଆରି କରାଯାଇ ପାରିବ ।

ମୂଲ୍ୟ : ଆନୁମାନିକ 500 ଟଙ୍କା

ସମ୍ପର୍କ ସ୍ଥାପନ : ଜେ. ଇ. ସିପିଲ ଓ ଡବ୍ଲ୍ୟୁ. ଏଚ୍. ଟିମିନ୍ସ
ଟ୍ରପିକାଲ ପ୍ରଡକ୍ଟସ୍ ଇନଷ୍ଟିଚ୍ୟୁଟ
56/62 ଗ୍ରେସ୍ ଇନ୍ ରୋଡ
ଲଣ୍ଡନ ଡବ୍ଲ୍ୟୁ ସି 1 X 8 ଏଲ ୟୁ
ୟୁନାଇଟେଡ କିଙ୍ଗଡମ୍

# ନଡିଆ ସଢାଇରୁ ବୋତାମ ପ୍ରସ୍ତୁତି



କାଠର ଲେଥ୍ ଯନ୍ତ୍ର



ଉପକରଣ (ବଟାଲି, ବୋତାମ ଧାରକ, ବିନ୍ଧାଣି ଓ ଟେମ୍ପ୍ଲେଟ)

# ନଡିଆ ସଢାଇରୁ ବୋତାମ ପ୍ରସ୍ତୁତି

## ବର୍ଣ୍ଣନା

ଶୁଖିଲା ନଡ଼ିଆ ସଢ଼ାଇକୁ ବୋତାମ ସାଇଜ ମାପରେ ଛୋଟ ଛୋଟ ଖଣ୍ଡ କରି କାଟି ନିଅନ୍ତୁ । ଗୋଟିଏ ଭଅଁର ବା ଡ୍ରିଲର ଦ୍ୱାରା ପ୍ରତି ବୋତାମରେ ଦୁଇଟି କଣା କରିବେ । ନଡ଼ିଆ ସଢ଼େଇର ଛୋଟ ଖଣ୍ଡକୁ ଗୋଟିଏ ହୋଲଡର ବା ଧାରକ ମଧ୍ୟରେ ରଖି କାଠର କୁନ୍ଦ ଯନ୍ତ୍ର ବା ଲେଦ୍ ଦ୍ୱାରା ପାଲିସ୍ କରାଯାଏ । ଏହାକୁ ଧାରୁଆ ବଟାଳି ବା ନିହାଣ ସାହାଯ୍ୟରେ ଗୋଲାକୃତି ଦିଆଯାଏ । ବିଭିନ୍ନ ପ୍ରକାର ନିହାଣ ଓ ସ୍ୟାଣ୍ଡ ପେପର ଦ୍ୱାରା ବୋତାମକୁ ବିଭିନ୍ନ ଆକାର ଓ ପାଲିସ୍ କରାଯାଏ । ଗୋଟିଏ ନଡ଼ିଆ ସଢ଼ାଇରୁ ପ୍ରାୟ କୋଡ଼ିଏ ଗୋଟି ବଡ ସାଇଜର ବୋତାମ ତିଆରି କରାଯାଇ ପାରିବ ।

ଏହି ପ୍ରକାର ବୋତାମ ପ୍ରସ୍ତୁତ କରିବା ପାଇଁ ଆବଶ୍ୟକ ହେଉଥିବା ଯନ୍ତ୍ରପାତି ସବୁ ଗ୍ରାମରେ ମିଳି ପାରିବ ।

ମୂଲ୍ୟ : ଅତି ସାମାନ୍ୟ

ସମ୍ପର୍କ ସ୍ଥାପନ : ରବର୍ଟ ହୋଲ୍ଲେଓ୍ୱେ
ଅକ୍ସଫାମ୍ ଫିଲ୍ଡ ଡାଇରେକ୍ଟର
ଜେ. ଏଲ୍. ମାଲ୍ବାର ନମ୍ବର 8
ସେମେରାଙ୍ଗ
ଇଣ୍ଡୋନେସିଆ

# ଡାଲି ଓ ଧାନ ପେଷା ଯନ୍ତ୍ର



1

ଧାତବ କାହାଳି




2






4

ପେଷା ଯନ୍ତ୍ର

# ଡାଲି ଓ ଧାନ ପେଷା ଯନ୍ତ୍ର

## ବର୍ଣ୍ଣନା

ଏହି ଉନ୍ନତ ପେଷଣା ଯନ୍ତ୍ରରେ ଚକ ପରି ଦୁଇଟି ଗୋଲ ପଥର ଗୋଟିଏ ଅନ୍ୟଟି ଉପରେ ରଖା ଯାଇଥାଏ । ତଳ ପଥର ଚକଟି ବୁଲେ ଏବଂ ଉପର ପଥରଟି ସ୍ଥିର ରହିଥାଏ । ଦୁଇଟି ପଥର ମଧ୍ୟସ୍ଥ ସ୍ଥାନ କମ୍ ବେଶୀ କରାଯାଇ ପାରେ । ତଳ ପଥର ଚକରେ ବଲ୍ ବିୟରିଙ୍ଗ ଲଗାଇ ଏହାକୁ କମ୍ ଶକ୍ତି ପ୍ରୟୋଗ କରି ଅନାୟାସରେ ବୁଲାଯାଇ ପାରିବ । ଉପରସ୍ଥ ପଥର ଚକ ମଧ୍ୟରେ ଡ଼ାଲି ବା ଶସ୍ୟ ଭର୍ତ୍ତି କରିବା ପାଇଁ ହୋପର ବା ବଡ଼ ଧାତବ କାହାଲ ଲାଗିଥାଏ । ଏକ ଲମ୍ବ ଦଣ୍ଡ ସାହାଯ୍ୟରେ ଗୋଟିଏ ହ୍ୟାଣ୍ଡେଲ ଏଥିରେ ଯୋଡ଼ା ଯାଇଥାଏ । ଏହା ତଳ ପଥର ଚକ ସହ ଯୋଡ଼ା ହୋଇଥାଏ । ମେସିନରେ ଯେପରି ଡାଲି ବା ଶସ୍ୟ ବିନା ବାଧାରେ ନିରନ୍ତର ପଶି ପାରିବ ସେଥିଲାଗି ଗୋଟିଏ ପତଳା ଦଣ୍ଡ ଯୋଡାଯାଏ । ମେସିନରେ ଧାନ ବା ଡ଼ାଲି ହାଲୁକା ଭାବେ ରଗଡ଼ା ଖାଇ ସଫା ହୋଇ ବାହାରକୁ ବାହାରି ଯାଏ ।

ଉଭୟ ଚକ ମଧ୍ୟରେ ଦୂରତ୍ୱ କମ୍ ବେଶୀ କରି ଡାଲି ବା ଧାନ ପେଷିବା ଉଭୟ କାମରେ ଏହାକୁ ପ୍ରୟୋଗ କରାଯାଇ ପାରିବ । ଏହି ମେସିନ ଦ୍ୱାରା ଘଣ୍ଟାକରେ 80 କି.ଗ୍ରା. ଧାନ ଓ 25 କି.ଗ୍ରା. ଡ଼ାଲିରୁ ଚୋପା ଛଡ଼ାଯାଇ ପାରିବ ।

ସ୍ଥାନୀୟ ଭାବେ ମିଳୁଥିବା ପଥରକୁ କାଟି ଚକ ପଥର ତିଆରି କରାଯାଇ ପାରିବ ।

ମୂଲ୍ୟ : ଆନୁମାନିକ 600 ଟଙ୍କା

ସମ୍ପର୍କ ସ୍ଥାପନ : କେ. ବି. ସେଣ୍ଟ୍ରାଲ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ
ମାଗନୱାଡ଼ି
ୱାର୍ଦ୍ଧା-442 001
ମହାରାଷ୍ଟ୍ର

# ଦୀର୍ଘସ୍ଥାୟୀ ଛଣ ଛପର





ରାସାୟନିକ ମିଶ୍ରଣ ମଧ୍ୟରେ ବୁଡାଇବା ପାଇଁ ପାତ୍ର





# ଦୀର୍ଘସ୍ଥାୟୀ ଛଣ ଛପର

## ବର୍ଣ୍ଣନା

ନଡ଼ା, ଛଣ, ନଡ଼ିଆ ପତ୍ର, ତାଳ ପତ୍ର ଇତ୍ୟାଦିରେ କରାଯାଉଥିବା ଘରଗୁଡ଼ିକର ଛପର ବହୁବିଧ ପୋକଗୁଡ଼ିକ ଦ୍ୱାରା ନଷ୍ଟ ହୋଇ ଯାଉଥିବାରୁ ପ୍ରତିବର୍ଷ ଗ୍ରାମାଞ୍ଚଳ କରିବାକୁ ପଡ଼ିଥାଏ । ବର୍ତ୍ତମାନ ଏଠାରେ ବର୍ଣ୍ଣିତ ଉପାୟରେ ନଡ଼ା, ଛଣ ଓ ପତ୍ରଗୁଡ଼ିକୁ ଏହି ଶସ୍ତା ରାସାୟନିକ ମିଶ୍ରଣ ମଧ୍ୟରେ ବୁଡ଼ାଇ ଅପେକ୍ଷାକୃତ ଦୀର୍ଘସ୍ଥାୟୀ କରାଯାଇ ପାରିବ ।

ଦୁଇ ଶହ ଲିଟର ପାଣିରେ 8 କିଲୋଗ୍ରାମ କପର ସଲଫେଟ ଓ 8 କିଲୋଗ୍ରାମ ସୋଡ଼ିୟମ ଡାଇକ୍ରୋମେଟ ମିଳାଇ ଦିଅନ୍ତୁ । ଏହି ସଲ୍ୟୁସନରେ 50 ଗ୍ରାମ ଏସିଟିକ ଏସିଡ୍ ମିଳାନ୍ତୁ ।

ନଡ଼ା, ଛଣ, ବା ନଡ଼ିଆ ତାଳ ପତ୍ରକୁ ପ୍ରଥମେ କିଛିଦିନ ପାଇଁ ଖୋଲା ଜାଗାରେ ପକାଇ ରଖନ୍ତୁ । ଯାହା ଫଳରେ ଏଥିରୁ ଆର୍ଦ୍ରତା ପରିମାଣ ଶତକଡ଼ା 12 ରୁ 15 ଭାଗକୁ କମି ଯାଇପାରିବ । ଏହା ଦ୍ୱାରା ରାସାୟନିକ ମିଶ୍ରଣ ଛଣରେ ଭଲଭାବେ ଭେଦ ପାରିବ । ଉଲ୍ଲିଖିତ ପରିମାଣଠାରୁ ଅଧିକ ପରିମାଣର ପାଣି ଏହି ସଲ୍ୟୁସନ ବା ମିଶ୍ରଣକୁ ଖୁବ୍ ପତଳା କରିଦେବ ତେଣୁ ସେ କଥା କରିବେ ନାହିଁ ।

ଛପର ବସ୍ତୁଗୁଡ଼ିକ ହାଲୁକା ଭାବେ ବାନ୍ଧି ପ୍ରିଜର୍ଭେଟିଭ ସଲ୍ୟୁସନ ମଧ୍ୟରେ ବୁଡ଼ାଇ ରଖନ୍ତୁ । ମିଶ୍ରଣଟି ଯେପରି ଭଲଭାବେ ସବୁଆଡ଼େ ଖେଳାଇ ହୋଇ ଲାଗେ ସେଥିପ୍ରତି ଦୃଷ୍ଟି ଦିଅନ୍ତୁ । ନଡ଼ା, ବା ଛଣ ଘାସ ଛଅ ଘଣ୍ଟା ପାଇଁ ଓ ନଡ଼ିଆ ବା ତାଳ ପତ୍ରକୁ ଚବିଶ ଘଣ୍ଟା ଲାଗି ମିଶ୍ରଣ ମଧ୍ୟରେ ବୁଡ଼ାଇ ରଖିବାକୁ ପଡ଼ିବ ।

ଏହି ଉପାୟଟି ଅବଲମ୍ବନ କଲାବେଳେ ନିମ୍ନୋକ୍ତ ବିଷୟଗୁଡ଼ିକ ପ୍ରତି ଧ୍ୟାନ ଦେବେ ।

i) ଏସିଟିକ୍ ଏସିଡ୍ ଖୁବ ସତର୍କତା ସହ ବ୍ୟବହାର କରନ୍ତୁ କାରଣ ଏହା ପଡ଼ିଲେ ଦେହ ଜଳି ଯାଇପାରେ ।

ii) ପ୍ରଥମେ ଛଣ ବା ପତ୍ର ଝାଡ଼ିକରି ଅନାବଶ୍ୟକ ଅଂଶ କାଟି ସାରିବା ପରେ ମିଶ୍ରଣରେ ବୁଡ଼ାନ୍ତୁ । ଏହା ଦ୍ୱାରା ମିଶ୍ରଣ ଅଯଥା ନଷ୍ଟ ହେବ ନାହିଁ ।

iii) ଛଣ ସହ ବତା, ବାଉଁଶ ଓ ନଇ ବା ଦଉଡ଼ି ମଧ୍ୟ ମିଶ୍ରଣ ମଧ୍ୟରେ ବୁଡ଼ାଇବେ ।

ଏକ ଖୁବ୍ ବଡ଼ ପାତ୍ର ଯେଉଁଥିରେ ବେଶୀ ମିଶ୍ରଣ ଓ ଛଣ ରହି ପାରିବ ତାହାର ବ୍ୟବସ୍ଥା କରନ୍ତୁ । ଗୋଟିଏ ଡ୍ରମକୁ ଲମ୍ବଭାବେ ଦୁଇଫାଳ କରି ସେଥିରେ ଅଳ୍ପ ଅଳ୍ପ ଛଣ ବୁଡ଼ାଇ ହେବ । ଏହିପରି ଅନେକଗୁଡ଼ିଏ ଡ୍ରମ କାଟି ଅଧିକ ବଡ଼ ପାତ୍ର ପ୍ରସ୍ତୁତ କରାଯାଇ ପାରିବ ଓ ବେଶୀ ପରିମାଣର ଛଣ ବୁଡ଼ାଯାଇ ପାରିବ ।

| | |
|---|---|
| ମୂଲ୍ୟ | : 30 କିଲୋଗ୍ରାମ ନଡ଼ା ବା ଛଣ କିମ୍ବା 30ଟି ତାଳପତ୍ର ପାଇଁ ହାରାହାରି ଏକ କିଲୋଗ୍ରାମ ମିଶ୍ରଣ ଖର୍ଚ୍ଚ ହେବ ଯାହାର ଦାମ୍ ପ୍ରାୟ 15 ଟଙ୍କା । |
| ସମ୍ପର୍କ ସ୍ଥାପନ | : ନ୍ୟାସନାଲ ବିଲଡ଼ିଙ୍ଗ ଅର୍ଗାନାଇଜେସନ<br>ନିର୍ମାଣ ଭବନ<br>ନୂଆ ଦିଲ୍ଲୀ-110 001 |

# ଅଦାହ୍ୟ ଛଣ ଛପର



# ଅଦାହ୍ୟ ଛଣ ଛପର

## ବର୍ଣ୍ଣନା

ଏହି ପଦ୍ଧତିରେ ସ୍ଥାନୀୟ ଭାବେ ମିଳୁଥିବା ବିଭିନ୍ନ ବସ୍ତୁ ଯଥା କାଦୁଅ, ଛଣ, ବିଟୁମେନ (ପିଚୁ), କିରୋସିନ ଓ ଗୋବର ଇତ୍ୟାଦିର ଉପଯୋଗ କରାଯାଏ । ଛଣ ଛପରର ବାହାର ଓ ଭିତର ଉଭୟ ପାର୍ଶ୍ୱରେ ଧୋଇ ହୋଇ ଯାଇ ନ ଥିବା କାଦୁଅ ପଲସ୍ତରା ଲେପି ଦିଆଯାଏ । ଶୁଖିଗଲା ପରେ ସୃଷ୍ଟି ହୋଇଥିବା ଫାଟଗୁଡ଼ିକୁ ପୁଣି ଥରେ ଏହି କାଦୁଅ ପଲସ୍ତରା ଦ୍ୱାରା ଭରିବାକୁ ପଡ଼େ । ଏହା ଉପରେ ପ୍ରଥମେ ଦୁଇ ପରସ୍ତ ଗୋବର ଲିପାଯାଏ ଏବଂ ତା ଉପରେ ଆଉ ଦୁଇ ପରସ୍ତ ବିଟୁମେନ କଟ୍‌ବ୍ୟାକ (ସମାନ ସମାନ ପରିମାଣରେ ପିଚୁ ଓ କିରୋସିନର ମିଶ୍ରଣ) ଲିପା ହୁଏ । ଶେଷରେ ପୁଣି ଥରେ ଗୋବର ଲିପାଯାଏ ।

ଏହି ଅଦାହ୍ୟ ଛଣ ଛପର ଜଳେ ଜଳେ ନାହିଁ କିମ୍ବା ଜଳିବାରେ ସାହାଯ୍ୟ କରେ ନାହିଁ । ଏପରିକି ବାତ୍ୟା ଓ ପ୍ରବଳ ବର୍ଷାରେ ମଧ୍ୟ କ୍ଷତିଗ୍ରସ୍ତ ହୁଏ ନାହିଁ । ପାରମ୍ପରିକ ଛଣ ଛପର ସାଧାରଣତଃ ଗୋଟିଏ ବର୍ଷ ଚଳିଥାଏ କିନ୍ତୁ ଏହି ଅଦାହ୍ୟ ଛଣ ଛପର ଛଅରୁ ଆଠ ବର୍ଷ ପର୍ଯ୍ୟନ୍ତ ଅକ୍ଷତ ଅବସ୍ଥାରେ ଦୀର୍ଘସ୍ଥାୟୀ ହୋଇ ରହେ ।

**ମୂଲ୍ୟ** : ଏକ ବର୍ଗ ମିଟର ପ୍ରତି 25 ଟଙ୍କା

**ସମ୍ପର୍କ ସ୍ଥାପନ** : ସେଣ୍ଟ୍ରାଲ ବିଲ୍‌ଡିଙ୍ଗ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ
ରୁରକି-247 672
ଉତ୍ତର ପ୍ରଦେଶ

# ବଲ୍ ବିୟରିଙ୍ଗ ଯୁକ୍ତ ଅରଘଟ୍ଟ



# ବଲ୍ ବିୟରିଙ୍ଗ ଯୁକ୍ତ ଅରଘଟ୍ଟ

## ବର୍ଣ୍ଣନା

ଗଭୀର କୂଅରୁ ପାଣି କାଢ଼ିବା ପାଇଁ କାଠ ବା ଲୁହାର ଅରଘଟ୍ଟର ଉପଯୋଗ କରାଯାଏ । ଏଥିରେ ଅଧିକ ଘର୍ଷଣ କରିବାକୁ ପଡ଼ୁଥିବାରୁ ଅଧିକ ଶକ୍ତି ପ୍ରୟୋଗ ଓ ଅଧିକ ସମୟ ବିନିଯୋଗ କରିବାକୁ ହୁଏ । ଏହି ଅରଘଟ୍ଟରେ ବଲ୍ ବିୟରିଙ୍ଗ ଯୋଡ଼ି ଦେଲେ କମ୍ ଶକ୍ତି ପ୍ରୟୋଗ କରିବାକୁ ପଡେ ଓ ଅଧିକ ସମୟ ମଧ୍ୟ ନଷ୍ଟ ହୁଏ ନାହିଁ ।

ଅରଘଟ୍ଟକୁ ଲୁହା ଦଣ୍ଡ ମଧ୍ୟରେ ଭର୍ତ୍ତି କରାଇ ଏହାର ଦୁଇ ପାଖରେ ଦୁଇଟି ଗ୍ରେଟ ବଲ୍ ବିୟରିଙ୍ଗ ଲଗାଯାଏ । କୌଣସି ମେସିନ ବା ବାହନର ପୁରୁଣା ବେକାର ବଲ୍ ବିୟରିଙ୍ଗ ଆଣି ଏଥିରେ ଲଗାଯାଇ ପାରେ ।

**ମୂଲ୍ୟ** : ଲୁହା ଷ୍ଟାଣ୍ଡ ସହ ପୂରା ନୂଆ ବଲ୍ ବିୟରିଙ୍ଗ ଯୁକ୍ତ ଅରଘଟ୍ଟର ଦାମ୍ ଆନୁମାନିକ 150 ଟଙ୍କା । କେବଳ ଦୁଇଟି ବଲ୍ ବିୟରିଙ୍ଗ ଦାମ୍ ପ୍ରାୟ 60 ଟଙ୍କା ପଡ଼ିବ ।

**ସମ୍ପର୍କ ସ୍ଥାପନ** : ସେଣ୍ଟର ଅଫ ସାଇନ୍ସ ଫର ଭିଲେଜେସ୍
ମଗନ ସଂଗ୍ରହାଳୟ
ୱାର୍ଦ୍ଧା-442 001
ମହାରାଷ୍ଟ୍ର

# ବାଉଁଶର ଫ୍ରେମ ଯୋଡା ବାହୁଙ୍ଗି






# ବାଉଁଶର ଫ୍ରେମ ଯୋଡ଼ା ବାହୁଙ୍ଗି

## ବର୍ଣ୍ଣନା

ଏହି ବାହୁଙ୍ଗିଟି ବାଉଁଶରେ ତିଆରି ହେବା ଆବଶ୍ୟକ । ଏହାର ଦୁଇ ପାଖରେ ଦୁଇ ଦୁଇଟି ତ୍ରିଭୁଜାକାର ବାଉଁଶ ଫ୍ରେମ ଏପରି ଭାବେ ବନ୍ଧା ହୋଇଥାଏ ଯଦ୍ୱାରା ଅଧିକ ପରିମାଣର ଘାସ, ଜାଳେଣି କାଠ ଓ ଲମ୍ବା ଲମ୍ବା ପତ୍ର କିମ୍ବା ମୂଳଥିବା ପନିପରିବା ବୁହାଯାଇ ପାରିବ । ଏହି ଉପକରଣ ଦ୍ୱାରା ବିଭିନ୍ନ ସାମଗ୍ରୀ ବୁହାହେବା ବେଳେ ଏକାଠି କରିବା, ବନ୍ଧା କରି ଦଉଡ଼ିରେ ଗଣ୍ଠି ବାନ୍ଧିବା ଇତ୍ୟାଦି ଏସବୁ କାମ କରିବାକୁ ପଡ଼େ ନାହିଁ । ବାହୁଙ୍ଗିକୁ ଗୋଟିଏ କାନ୍ଧରୁ ଅନ୍ୟ କାନ୍ଧକୁ ପରିବର୍ତ୍ତନ କରିବା ମଧ୍ୟ କଷ୍ଟକର ହୁଏ ନାହିଁ ।

ଏହି ଉପାୟରେ ଓଜନ ବୋହିବା ମଧ୍ୟ କଷ୍ଟପ୍ରଦ ହୁଏ ନାହିଁ କିମ୍ବା ଶୀଘ୍ର କ୍ଲାନ୍ତ ଲାଗେ ନାହିଁ ।

**ମୂଲ୍ୟ** : ଏହାର ମୂଲ୍ୟ ଅତି ସାମାନ୍ୟ । ଗ୍ରାମର କାରିଗରମାନଙ୍କ ଦ୍ୱାରା ସହଜରେ ଏହା ତିଆରି କରାଯାଇ ପାରିବ ।

**ସମ୍ପର୍କ ସ୍ଥାପନ** : କନ୍‌ସୋର୍ଟିୟମ ଅନ ରୁରାଲ ଟେକ୍ନୋଲୋଜି (ସି. ଓ. ଆର୍. ଟି.)
ଏ-89, ମଧୁବନ
ନୂଆ ଦିଲ୍ଲୀ-110 092

# ଚିନାବାଦାମ ଚୋପା ଛଡାଇବା ଯନ୍ତ୍ର









# ଚିନାବାଦାମ ଚୋପା ଛଡାଇବା ଯନ୍ତ୍ର

## ବର୍ଣ୍ଣନା

ହାତରେ ଚିନାବାଦାମ ଛଡାଇବା କାର୍ଯ୍ୟଟି ବଡ଼ ସମୟ ସାପେକ୍ଷ ଓ ପରିଶ୍ରମ ଦାୟକ ଅଟେ । କମ୍ ସମୟରେ, ଅଳ୍ପ ପରିଶ୍ରମରେ, ଅଧିକ ପରିମାଣର ଚିନାବାଦାମ ଛଡାଇବା ପାଇଁ ଏଠାରେ ବର୍ଣ୍ଣିତ ଯନ୍ତ୍ରଟି ବିଶେଷ ସହାୟକ ହୋଇ ପାରିବ । କହିବାକୁ ଗଲେ ଏହା ଏକ ପ୍ରକାର ଚାଲୁଣୀ ।

3 ଫୁଟ ଲମ୍ବ ଓ 2 ଫୁଟ ଚଉଡ଼ାର ଖଣ୍ଡିଏ ଲୁହା ଚଦର ନେଇ ଧାଡ଼ି ଧାଡ଼ି କରି ଅଧ ଇଞ୍ଚ ବ୍ୟାସ ବିଶିଷ୍ଟ ଛିଦ୍ର କରନ୍ତୁ । କେବଳ ଚାରି ଧାର ପାଖରୁ ଦୁଇ ଇଞ୍ଚ ଛାଡ଼ି ଦିଅନ୍ତୁ । ବାଇସାଇକଲ ପେଡାଲର ସ୍ପିଣ୍ଡଲକୁ ଗୋଟିଏ ହାତୁଡ଼ିରେ ବାଡେଇ ଲୁହା ଚଦରରେ ଛିଦ୍ର କରିଯାଇ ପାରିବ । ଲୁହା ଚଦର ଓଲଟାଇ ଦେଇ ତାହାର ବିପରୀତ ପାର୍ଶ୍ୱରେ ତିନି ଇଞ୍ଚିଆ କଣ୍ଟା ଦ୍ୱାରା ଏହି ବଡ ଛିଦ୍ରଗୁଡ଼ିକ ପାଖରେ ଛୋଟ ଛୋଟ କଣା କରିବାକୁ ହେବ । ବର୍ତ୍ତମାନ ଏହି ଲୁହା ଚଦରଟିକୁ ଗୋଟିଏ କାଠ ବାକ୍ସ ଉପରେ ବସାନ୍ତୁ । କଣ୍ଟାରେ କରିଯାଇ ଥିବା ଛୋଟ ଛୋଟ ଛିଦ୍ରର ଧାରୁଆ ଦନ୍ତୁରିତ ପାର୍ଶ୍ୱଟି ଉପର ଆଡକୁ ରହିବା ଆବଶ୍ୟକ ।

ମୁଠାଏ ଚିନାବାଦାମ ଏହି ଚାଲୁଣୀ ଉପରେ ପକାଇ ଗୋଟିଏ କାଠ ପଟା ବା ପଥର ଦ୍ୱାରା ଘଷିବାକୁ ହେବ । ଗୋଜିଆ ଦାନ୍ତ-ଗୁଡ଼ିକରେ ଚୋପାଗୁଡ଼ିକ ଚିରି ବଡ ଛିଦ୍ର ଦେଇ ତଳେ ଥିବା ପାତ୍ରରେ ସଂଗୃହୀତ ହେବ ।

**ମୂଲ୍ୟ** : ଅତି ସାମାନ୍ୟ । ଏଥିପାଇଁ ଆବଶ୍ୟକୀୟ ସାମଗ୍ରୀ ଓ କାରିଗର ଗ୍ରାମରେ ହିଁ ମିଳିବେ ।

**ସମ୍ପର୍କ ସ୍ଥାପନ** : ଫାଦର ବ୍ରିଷ୍ଟାନ ମ୍ୟାକ୍ ଗ୍ୟାରି
ସେଣ୍ଟ ମାଇକେଲସ୍ ମିଶନ୍
ମୋହଣ୍ଡୋରେ
ଜିମ୍ବାୱେ

# ଶୁଖିଲା ମକା ଭଣ୍ଡିରୁ କୋଇଲା ପ୍ରସ୍ତୁତି



200 ଲିଟର ତେଲ ଡ୍ରମ



ପାଣି ଢାଳି ନିଆଁ ଲିଭାଇ ଦିଅନ୍ତୁ



ଗୋଟିଏ ବସ୍ତା ମକା ଭଣ୍ଡିକୁ ତିନିଭାଗ କରିନିଅ



ପ୍ରଥମ ଭାଗ ପୂରା ଜଳେଇ ଦିଅ



ଅଙ୍ଗାରକୁ ଖେଳାଇ ଦେଇ ସୂର୍ଯ୍ୟ କିରଣରେ ଶୁଖିବାକୁ ଦିଅନ୍ତୁ



ଅନ୍ୟ ମକା ଭଣ୍ଡି ତକ ଭର୍ତ୍ତିକରି ଜଳେଇ ଦିଅ



ସମ୍ପୂର୍ଣ୍ଣ ଜଳି ଯାଇଥିବା ମକା ଭଣ୍ଡି ତଳେ ଓଲଟାଇ ଦିଅ



ଗୁଣ୍ଡ ପାଉଁଶ ଅଙ୍ଗାର ଛାଣି ଦେଇ ଶୁଖିଲା ଜାଗାରେ ବ୍ୟବହାର ପାଇଁ ରଖନ୍ତୁ

# ଶୁଖିଲା ମକା ଭଣ୍ଡିରୁ କୋଇଲା ପ୍ରସ୍ତୁତି

## ବର୍ଣ୍ଣନା

ମକା ଦାନା ଛଡ଼ାଇ ନେବା ପରେ ଯେଉଁ ଅଦରକାରୀ ଅଂଶଟି ରହିଯାଏ ତାକୁ ମକା ଭଣ୍ଡି କୁହାଯାଏ । ମକା ଫସଲରୁ ଶତକଡ଼ା 25 ଭାଗ ପର୍ଯ୍ୟନ୍ତ ଅଦରକାରୀ ମକା ଭଣ୍ଡି ମିଳିଥାଏ । ଏହି ମକା ଭଣ୍ଡିକୁ ଅଙ୍ଗାରରେ ପରିଣତ କରାଯାଇ ପାରିବ ।

ଗୋଟିଏ ଦୁଇ ଶହ ଲିଟର ବାଲା ତେଲ ଡ୍ରମ ନିଅ ଓ ତାହାର ଗୋଟିଏ ପାଖ କାଟି ବାହାର କରି ଦିଅନ୍ତୁ । ଡ୍ରମର ଏକ ତୃତୀୟାଂଶ ମକା ଭଣ୍ଡି ଭର୍ତ୍ତିକରି ଜଳାନ୍ତୁ । ଧୂଆଁ ଉଠିବା ସମ୍ପୂର୍ଣ୍ଣ ବନ୍ଦ ହୋଇ ନିଆଁ ଶିଖା ଦେଖାଗଲେ ଅନ୍ୟ ମକା ଭଣ୍ଡି ତକ ଡ୍ରମ ମଧ୍ୟରେ ଢାଳି ଦିଅନ୍ତୁ । ନିଆଁ ଜାଳିବା ବନ୍ଦ ନ ହେବା ଆବଶ୍ୟକ । ଭଲ ଭାବେ ଜଳି ଯାଇଥିବା ଅଙ୍ଗାର ତଳେ ଓଲଟାଇ ଢାଳି ତା ଉପରେ ପାଣି ଢାଳି ନିଆଁ ଲିଭେଇ ଦେବାକୁ ହେବ । ତାପରେ ଅଙ୍ଗାରତକ ଖେଳାଇ ଦେଇ ସୂର୍ଯ୍ୟାଲୋକରେ ଶୁଖିବାକୁ ଦିଅନ୍ତୁ । ପାଉଁଶତକ ଛାଡ଼ିଦେଇ ଅଙ୍ଗାରତକ ବାଛି ନିଅନ୍ତୁ । ଅଙ୍ଗାରତକ ମହଜୁଦ୍ କରି ଆବଶ୍ୟକ ସମୟରେ ଉପଯୋଗ କରିପାରିବେ ।

ଏହି ଅଙ୍ଗାରରୁ ଅଧିକ ଶକ୍ତି ମିଳିଥାଏ ଏବଂ ଧୂଆଁ ବାହାରି ନ ଥାଏ ।

**ମୂଲ୍ୟ** : ଅତି ସାମାନ୍ୟ

**ସମ୍ପର୍କ ସ୍ଥାପନ** : ଅଫିସ ଅଫ କନସ୍ୟୁମର'ସ୍ ପ୍ରୋଟେକସନ
ଗଭର୍ଣ୍ଣମେଣ୍ଟ ହାଉସ
ବ୍ୟାଙ୍ଗକକ୍
ଥାଇଲାଣ୍ଡ

# ଦୋହରା ଡ୍ରମ ଷ୍ଟୋଭ


ପାତ୍ର
ଧାତବ ଯୋଡଣୀ
ବାହାର ଡ୍ରମ
ଭିତର ଡ୍ରମ
ଜାଳେଣୀ
ଶୀତତାପ ନିବାରକ ପଦାର୍ଥ
ପବନ ଯିବା ପାଇଁ ରାସ୍ତା
କାଠ ଖଣ୍ଡ ଓ ଶୀତତାପ ନିବାରକ ପଦାର୍ଥ

# ଦୋହରା ଡ୍ରମ ଷ୍ଟୋଭ

## ବର୍ଣ୍ଣନା

ଦୋହରା ଡ୍ରମ ଷ୍ଟୋଭ ଦୁଇଟି ଗୋଲାକାର ଡବାରେ ତିଆରି ହୋଇଥାଏ । ବାହାର ଡବାର ବ୍ୟାସ 30 ସେ.ମି. ଓ ଉଚ୍ଚତା 35 ସେ.ମି. । ଭିତର ଡବାର ବ୍ୟାସ 20 ସେ.ମି. ଓ ଉଚ୍ଚତା 25 ସେ.ମି. । ବାହାର ଡ୍ରମ ଭିତରେ ଭିତର ଡ୍ରମଟି ରହେ ଏବଂ ଦୁଇଟି ଡ୍ରମ ମଧ୍ୟସ୍ଥ ଭିତରର ଚାରିପାଖେ ଥିବା 5 ସେ.ମି. ଶୂନ୍ୟସ୍ଥାନକୁ କାଠ ଓ ଅନ୍ୟାନ୍ୟ ଶସ୍ତା ଶୀତ ତାପ ନିବାରକ ପଦାର୍ଥ ଦ୍ୱାରା ଭରି ଦିଅନ୍ତୁ । ଉପର ପାଖକୁ ମୋଟା ଧାତବ ଚଦରରେ ପୂର୍ଣ୍ଣ ରୂପେ ଘୋଡାଇ ରଖନ୍ତୁ । ଯାହା ଦ୍ୱାରା ଶୀତ ତାପ ନିବାରକ ପଦାର୍ଥଗୁଡ଼ିକ ହଲାଇଲେ ବାହାରକୁ ବାହାରି ଆସି ନ ପାରିବ ।

5 ସେ.ମି. ବ୍ୟାସ ବିଶିଷ୍ଟ ଦୁଇଟି ଛିଦ୍ର ଉଭୟ ଡବାରେ ତଳ ଭାଗ ଆଡ଼କୁ କରାଯାଇ ଥାଏ । ଏହି ଛିଦ୍ର ବଡ ଡବାର ତଳ ଭାଗରୁ 5 ସେ.ମି. ଉପରକୁ ଓ ଛୋଟ ଡବାର ନିମ୍ନ ଭାଗରେ କରାଯାଏ । 5 ସେ.ମି. ବ୍ୟାସ ବିଶିଷ୍ଟ ପ୍ରାୟ 10 ସେ.ମି. ଲମ୍ବର ପାଇପ୍ ଏହି ପବନ ଯିବା ଆସିବା କରିବା ସ୍ଥାନରେ ଲଗାଇ ଦିଆଯାଏ । ସେହି ପରିମାଣ ବ୍ୟାସ ବିଶିଷ୍ଟ ଅନ୍ୟ ଗୋଟିଏ 32 ସେ.ମି. ଲମ୍ବର ପାଇପ୍ ଭିତର ଡବାର ଠିକ୍ ମଝିରେ ରଖାଯାଏ । ଏହି ପାଇପର ତଳ ବାହାରକୁ ଆସିଥିବା ପାଇପ ସହ ଯୋଡି ଦିଆଯାଏ । ଭିତରର ଡବା ଓ କେନ୍ଦ୍ରସ୍ଥ ପାଇପ ମଝାମଝି ଯାଗାରେ କାଠ କରତଗୁଣ୍ଡ, ଧାନ ଭୂସି, କାଠର ଚଞ୍ଚାଗୁଣ୍ଡ ଭର୍ତ୍ତି କରି ଝୁନ୍ ଚାପି ଦିଅନ୍ତୁ ଓ ଉଭୟ ପାଇପ୍ କାଢି ନିଅନ୍ତୁ । 21 ସେ.ମି. ବ୍ୟାସର ଧାତୁର ଘୋଡଣୀ, ଯାହା ମଝିରେ 5 ସେ.ମି. ବ୍ୟାସ ବିଶିଷ୍ଟ ଛିଦ୍ର କରାଯାଇଛି, ତାହା ଭିତର ଡବା ଉପରେ ଯୋଡି ଦିଆଯାଏ । ଏହାର ଉପର ଭାଗରେ ତିନୋଟି ଝିଙ୍କା କରାଯାଇ ଥାଏ, ଯାହା ଉପରେ ଡେକଚି ବା କଡେଇ ରଖାଯାଇ ପାରିବ । ବର୍ତ୍ତମାନ ଷ୍ଟୋଭ ଜଳିବା ପାଇଁ ପ୍ରସ୍ତୁତ । ପତଳା କାଠ, ଶୁଖିଲା ପତ୍ର, ବା ଟିକେ କାଗଜ ଖଣ୍ଡ ଜଳାଇ କରି ଭିତରେ ପୁରାଇ ଦେଲେ ଷ୍ଟୋଭ ଜଳି ଉଠିବ । ଏଥିରୁ କୌଣସି ଧୂଆଁ ନିର୍ଗତ ହେବ ନାହିଁ । ଇନ୍ଧନର ପ୍ରକାର ଅନୁଯାୟୀ ଏହି ଷ୍ଟୋଭ 2½ ଘଣ୍ଟାରୁ 4 ଘଣ୍ଟା ପର୍ଯ୍ୟନ୍ତ ଜଳିବ ।

ଦୋହରା ଷ୍ଟୋଭଟି ସ୍ଥାନୀୟ କମାର ବା କାରିଗରଙ୍କ ଦ୍ୱାରା ସହଜ ମିଳୁଥିବା ଖାଲି ଡ୍ରମକୁ ନେଇ ତିଆରି କରାଯାଇ ପାରିବ ।

**ମୂଲ୍ୟ** : ଆନୁମାନିକ 30 ରୁ 35 ଟଙ୍କା

**ସମ୍ପର୍କ ସ୍ଥାପନ** : ସେଣ୍ଟର ଫର ରୁରାଲ ଡେଭଲପମେଣ୍ଟ ଆଣ୍ଡ
ଆପ୍ରୋପ୍ରିଏଟ୍ ଟେକ୍ନୋଲୋଜି
ଇଣ୍ଡିଆନ ଇନ୍‌ଷ୍ଟିଚ୍ୟୁଟ ଅଫ ଟେକ୍ନୋଲୋଜି
ନୂଆ ଦିଲ୍ଲୀ-110 016

# କୂଅ ପାଇଁ କ୍ଲୋରିନ୍ ଯୁକ୍ତ ପାତ୍ର




ହାଟର କୂଅ ଲାଗି ଗୋଟିଏ ମାଠିଆ ପ୍ରଣାଳୀ




ଘରର କୂଅ ଲାଗି ଦୋହରା ମାଠିଆ ପ୍ରଣାଳୀ

# କୂଅ ପାଇଁ କ୍ଲୋରିନ୍ ଯୁକ୍ତ ପାତ୍ର

## ବର୍ଣ୍ଣନା

ଏହି ପାତ୍ର ଦ୍ୱାରା ସାଧାରଣ କୂଅର ପାଣି ତିନ ସପ୍ତାହ ପର୍ଯ୍ୟନ୍ତ ଉତ୍ତମ ରୂପେ କ୍ଲୋରିନ୍ ଯୁକ୍ତ ହୋଇ ରହେ । ଗୋଟିଏ 7 ବା 8 ଲିଟର ପାଣି ଧରିବା ଭଳି ପାତ୍ର ବା ମାଠିଆ ନିଅନ୍ତୁ । ଏହାର ନିମ୍ନ ଦେଶରେ ଅଧ ସେ.ମି. ବ୍ୟାସ ବିଶିଷ୍ଟ ଛଅ ବା ଆଠଟି ଛିଦ୍ର କରନ୍ତୁ । ଛିଦ୍ର ଉପରେ 2-4 ସେ.ମି. ଆକାରର ଗୋଡ଼ି ବା ଛୋଟ ପଥର ରଖି ଦିଆଯାଏ । ଏହି ପଥର ସ୍ତର ଉପରେ ତାଠାରୁ ଛୋଟ ପଥରର ପରସ୍ତଟିଏ ବିଛାଇ ଦିଆଯାଏ । 3 କିଲୋଗ୍ରାମ ମୋଟା ବାଲି ସହିତ 15 କିଲୋଗ୍ରାମ ବ୍ଲିଚିଙ୍ଗ ପାଉଡର ମିଶାଇ ଏହାର ଉପରେ ବିଛାଇ ଦିଅନ୍ତୁ । ପରିଶେଷରେ ଛୋଟ ଛୋଟ ଗୋଡ଼ିରେ ପାତ୍ରଟି ସମ୍ପୂର୍ଣ୍ଣ ଭରି ଦିଅନ୍ତୁ । ବର୍ତ୍ତମାନ ଏହି ପାତ୍ରଟି ଗୋଟିଏ ଦଉଡ଼ି ସାହାଯ୍ୟରେ ବାନ୍ଧି କୂଅ ଭିତରେ ବୁଡ଼ାଇ ରଖନ୍ତୁ । ପାଣି ସ୍ତରର ଏକ ମିଟର ତଳେ ଏହି ପାତ୍ରଟି ରହିବା ଆବଶ୍ୟକ ।

9000 ରୁ 13000 ଲିଟର ପାଣି ଥିବା କୂଅ ଯେଉଁଠାରୁ ପ୍ରତିଦିନ 900 ରୁ 1300 ଲିଟର ପାଣି କଢ଼ାଯାଏ ତା' ଲାଗି ଗୋଟିଏ ପାତ୍ର ଯଥେଷ୍ଟ । ଏହା କୂଅଟିକୁ 10 ରୁ 15 ଦିନ ପର୍ଯ୍ୟନ୍ତ କ୍ଲୋରିନ ଯୁକ୍ତ କରି ରଖିଥାଏ । ଏଥିରୁ ଅଧିକ ପାଣି କଢ଼ା ହେଉଥିଲେ ଦୁଇଟି ପାତ୍ର କୂଅ ମଧ୍ୟରେ ପକାଯାଇ ପାରେ ।

4000 ଲିଟରରୁ କମ୍ ପାଣିଥିବା କୂଅ, ଯେଉଁଥିରୁ ପ୍ରତିଦିନ 360 ରୁ 450 ଲିଟର ପାଣି କଢ଼ାଯାଏ ସେଥିଲାଗି ଦୋହରା ପାତ୍ର, ଗୋଟିଏ ବଡ଼ ପାତ୍ର ମଧ୍ୟରେ ଅନ୍ୟ ଗୋଟିଏ ଛୋଟ ପାତ୍ର ରଖି ଏ କାର୍ଯ୍ୟରେ ଉପଯୋଗ କରାଯାଇ ପାରେ ।

ଭିତର ପାତ୍ରଟି ମଧ୍ୟରେ ଏକ କିଲୋଗ୍ରାମ ବ୍ଲିଚିଙ୍ଗ ପାଉଡର ଓ ଦୁଇ କିଲୋଗ୍ରାମ ବାଲିର ମିଶ୍ରଣ ଭର୍ତ୍ତିକରି ତାହାକୁ ବଡ଼ ପାତ୍ର ମଧ୍ୟରେ ରଖି ଦିଆଯାଏ । ମିଶ୍ରଣ ସ୍ତରର ସମାନାନ୍ତରରେ ଛୋଟ ପାତ୍ରରେ ଗୋଟିଏ ଛିଦ୍ର କରି ଦିଆଯାଏ । ସେହିପରି ବାହାର ପାତ୍ରର ନିମ୍ନ-ଦେଶଠାରୁ ତିନ ବା ଚାରି ସେ.ମି. ଉପରକୁ ଏକ ସେ.ମି. ବ୍ୟାସ ବିଶିଷ୍ଟ ଗୋଟିଏ ଛିଦ୍ର କରାଯାଏ ।

ଉଭୟ ପାତ୍ରର ମୁହଁ ପଲିଥିନରେ ବାନ୍ଧି ବନ୍ଦ କରି ଦିଆଯାଏ । ଏହା ଦ୍ୱାରା କୂଅର ପାଣି 2 ରୁ 3 ସପ୍ତାହ ପର୍ଯ୍ୟନ୍ତ କ୍ଲୋରିନ ଯୁକ୍ତ ହୋଇ ରହେ ।

ଖରା କାଳରେ ଏହି ପରିଣାମ ପ୍ରାପ୍ତ କରିବା ସମ୍ଭବ ହେବ ନାହିଁ ।

**ମୂଲ୍ୟ** : ଆନୁମାନିକ 25 ରୁ 30 ଟଙ୍କା (ପାତ୍ର, ଦଉଡ଼ି ଓ ବ୍ଲିଚିଙ୍ଗ ପାଉଡରର ମୂଲ୍ୟ ମିଶାଇ)

**ସମ୍ପର୍କ ସ୍ଥାପନ** : ନ୍ୟାସନାଲ ଏନଭାଇରନମେଣ୍ଟାଲ ଇଞ୍ଜିନିୟରିଙ୍ଗ
ରିସର୍ଚ୍ଚ ଇନଷ୍ଟିଚ୍ୟୁଟ
ନେହେରୁ ମାର୍ଗ
ନାଗପୁର-400 020
ମହାରାଷ୍ଟ୍ର

# କୀଟ ରୋଧକ ତେଲ



କେରୋସିନ 100 ମିଲି



ଖାଇବା ତେଲ
ଏକଚାମଚ



କର୍ପୂରର ଗୁଣ୍ଡ
ପାଞ୍ଚଚାମଚ



ଇଉକାଲିପଟସ୍ ତେଲ ଏକଚାମଚ



ଘଃ ଦେଖଚ

# କୀଟ ରୋଧକ ତେଲ

## ବର୍ଣ୍ଣନା

ସହଜ ସୁଲଭ ସାମଗ୍ରୀ ଦ୍ୱାରା କୀଟ ପତଙ୍ଗ ରୋଧକ ତେଲ ପ୍ରସ୍ତୁତ କରାଯାଇ ପାରିବ । ଏଥିପାଇଁ 100 ଭାଗ କରୋସିନ ତେଲ, ଏକଭାଗ ଖାଇବା ତେଲ, ଏକଭାଗ ୟୁକାଲିପଟସ୍ ତେଲ, ପାଞ୍ଚଭାଗ ଗନ୍ଧକର୍ପୂର ଗୁଣ୍ଡ ଏକାଠି ମିଶାଇ ଏକ ଦ୍ରବଣ ପ୍ରସ୍ତୁତ କରାଯାଏ । ଦ୍ରବଣରେ ଏକତ୍ରିତ ସାମଗ୍ରୀଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ମିଳାଇ ଯିବା ପର୍ଯ୍ୟନ୍ତ ତାହାକୁ ହଲାନ୍ତୁ ।

ଶୋଇବା ପୂର୍ବରୁ ଏହି ପ୍ରସ୍ତୁତ ତେଲ ଦେହର ଖୋଲା ଅଂଶରେ ଲଗାଇ ନିଅନ୍ତୁ । ଏହି ତେଲର ପ୍ରଭାବରେ ମଶା, ମାଛି, ଓଡ଼ଶ ଓ ଅନ୍ୟାନ୍ୟ କୀଟ ପତଙ୍ଗ ଆପଣଙ୍କ ପାଖ ମାଡ଼ିବେ ନାହିଁ ।

| | |
|---|---|
| ମୂଲ୍ୟ | : ଅତି ସାମାନ୍ୟ |
| ସମ୍ପର୍କ ସ୍ଥାପନ | : ସାଇନ୍ସ ଆଣ୍ଡ ଟେକ୍ନୋଲୋଜି ଫର ଓମ୍ୟେନ<br>ଡିପାର୍ଟମେଣ୍ଟ ଅଫ ସାଇନ୍ସ ଆଣ୍ଡ ଟେକ୍ନୋଲୋଜି<br>ଟେକ୍ନୋଲୋଜି ଭବନ<br>ନୂଆ ଦିଲ୍ଲୀ-110 016 |

# ଉକୁଣୀ ମାରିବା ଉପାୟ



କେରସିନ



କେଶ ତୈଳ

1



2

ମିଶ୍ରିତ ତୈଳ ଭଲକରି ଘୋଳାଇ କରି ଲଗାନ୍ତୁ



3

ତେଲ ଲଗାଇବା ପରେ ତଉଲିଆ
ସାହାଯ୍ୟରେ ବାଳ ବାନ୍ଧି କରି ରଖନ୍ତୁ

4



ସିକାକାଇ ସାବୁନରେ ବାଳ ଧୋଇ ଦିଅନ୍ତୁ

# ଉକୁଣୀ ମାରିବା ଉପାୟ

## ବର୍ଣ୍ଣନା

ସମାନ ସମାନ ପରିମାଣରେ କିରୋସିନ ଓ ମୁଣ୍ଡରେ ଲଗାଇବା ତେଲ ନେଇ ଭଲ ଭାବରେ ମିଶାଇ ଦିଅନ୍ତୁ । ଏହି ମିଶ୍ରିତ ତେଲ ସନ୍ଧ୍ୟାବେଳେ ମୁଣ୍ଡରେ ଲଗାନ୍ତୁ । ମୁଣ୍ଡର ପ୍ରତ୍ୟେକଟି ବାଳରେ ଯେପରି ଭଲ ଭାବରେ ତେଲ ଖେଳେଇ ହୋଇ ଲାଗେ ସେଥି ପ୍ରତି ଦୃଷ୍ଟି ଦିଅନ୍ତୁ । ମୁଣ୍ଡରେ ଥିବା ସବୁ ଉକୁଣୀ ଓ ନଖ (ଉକୁଣୀର ଛୋଟ ଛୋଟ ଡିମ୍ବ) ଏହି ତେଲ ସଂସ୍ପର୍ଶରେ ଆସିବା ନିହାତି ଆବଶ୍ୟକ । ତାପରେ ଗୋଟିଏ ତଉଲିଆରେ ମୁଣ୍ଡର ବାଳ ଟାଙ୍କି ବାନ୍ଧି କରି ରଖନ୍ତୁ । ପରବର୍ତ୍ତୀ ଦିନ ସକାଳେ ରିଠା ଫଳ ଗୁଣ୍ଡ ବା ସିକାକାଇ ସାବୁନରେ ଭଲ ଭାବରେ ବାଳ ଧୋଇ ନେଇ, ଭଲ ପତଳା ଦାନ୍ତ ଥିବା ପାନିଆରେ ମୁଣ୍ଡ କୁଣ୍ଡାନ୍ତୁ ।

ମୁଣ୍ଡ କୁଣ୍ଡାଇବା ପାଇଁ ବ୍ୟବହାର କରିଥିବା ପାନିଆକୁ କିରୋସିନ ମଧ୍ୟରେ ବୁଡ଼ାଇ ରଖନ୍ତୁ; କାରଣ ମୁଣ୍ଡରୁ ବାହାରିଥିବା ଜୀଅନ୍ତା ଉକୁଣୀ ଓ ନଖ ଏହା ଫଳରେ ମରିଯିବେ ଓ ପାନିଆ ଦ୍ୱାରା ପୁଣି ଉକୁଣୀ ହେବାର ଆଶଙ୍କା ରହିବ ନାହିଁ ।

ଦହି, ଲିଭମ ଜୁସ୍ କିମ୍ବା ନିମ୍ବ ପତ୍ର ବାଟିକରି ବାଳ ଓ ମୁଣ୍ଡ ଉପରେ ଲଗାଇବା ଦ୍ୱାରା ରୁପିରୁ ମୁକ୍ତି ମିଳି ପାରିବ । ଏକ ଘଣ୍ଟା ପର୍ଯ୍ୟନ୍ତ ମୁଣ୍ଡରେ ଲଗାଇ ରଖି ତାପରେ ଭଲ ଭାବେ ଧୋଇ ଦିଅନ୍ତୁ । ସପ୍ତାହରେ ଥରେ ଲେଖାଏଁ ଏହିପରି କରନ୍ତୁ ।

**ମୂଲ୍ୟ** : ଅତି ସାମାନ୍ୟ

**ସମ୍ପର୍କ ସ୍ଥାପନ** : ସାଇନ୍ସ ଆଣ୍ଡ ଟେକ୍ନୋଲୋଜି ଫର ଓମେନ
ଡିପାର୍ଟମେଣ୍ଟ ଅଫ ସାଇନସ ଆଣ୍ଡ ଟେକ୍ନୋଲୋଜି
ଟେକ୍ନୋଲୋଜୀ ଭବନ
ନୂଆ ଦିଲ୍ଲୀ-110 016

**ଦ୍ରଷ୍ଟବ୍ୟ :**
ଉପରେ ବର୍ଣ୍ଣିତ ସରଳ ଓ ନିରାପଦ ଉକୁଣୀ ମାରିବା ଉପାୟଟି ଦେବାର କାରଣ ହେଉଛି, ଆମର ଗାଁ ଗହଳରେ ଅନେକ ଝିଅ ବୋହୂ ଉକୁଣୀରୁ ମୁକ୍ତି ପାଇବାକୁ ଯାଇ ତୀବ୍ର ଗନ୍ଧଯୁକ୍ତ କଷ୍ଟିକ ପଦାର୍ଥ ଡି ଡି ଟି ଓ ଅନ୍ୟାନ୍ୟ ପେଷ୍ଟିସାଇଡସ୍ ମୁଣ୍ଡରେ ଲଗାଉଛନ୍ତି ଯାହା ଅନେକ କ୍ଷେତ୍ରରେ ଭୟଙ୍କର ପ୍ରତିକ୍ରିୟା ସୃଷ୍ଟି କରିଥାଏ ।

# ଶୀତଳ ପାତ୍ର




ସମ୍ପୂର୍ଣ୍ଣ ଏକକ




2

ମଝିରୁ ବିଭାଜନ କରାଯାଇଥିବା ଦୃଶ୍ୟ




3

# ଶୀତଳ ପାତ୍ର

## ବର୍ଣ୍ଣନା

ଏହି ଶୀତଳ ପାତ୍ରରେ ପନିପରିବା, ଫଳ, ଦୁଧ ଓ ରନ୍ଧା ହୋଇଥିବା ଖାଦ୍ୟ ପଦାର୍ଥ ତଟକା ଭାବେ ଏକ ସପ୍ତାହ ପାଇଁ ରଖାଯାଇ ପାରିବ ।

ଚିତ୍ରରେ ଦେଖା ଯାଉଥିବା ଭଳି ଗୋଟିଏ ବଡ଼ ପାତ୍ର ମଧ୍ୟରେ ଅନ୍ୟ ଗୋଟିଏ ଛୋଟ ପାତ୍ର ରଖା ଯାଇଥାଏ । ଭିତରେ ଥିବା ପାତ୍ର ମଧ୍ୟରେ ପନିପରିବା, ଫଳ, ରନ୍ଧା ହୋଇଥିବା ଖାଦ୍ୟ ପଦାର୍ଥ, ଦୁଧ ଇତ୍ୟାଦି ରଖାଯାଇ ପାରିବ । ବାହାରର ପାତ୍ର ମଧ୍ୟରେ ପାଣି ଭର୍ତ୍ତି କରାଯାଇ ଥାଏ । ଏହି ପାଣି ମାଟିର ଛିଦ୍ର ମଧ୍ୟ ଦେଇ ବାଷ୍ପୀକରଣ ହୋଇ ବାହାରି ଯାଇଥାଏ । ନିରନ୍ତର ବାଷ୍ପୀଭବନ ପ୍ରକ୍ରିୟା ଯୋଗୁଁ ଭିତରର ଛୋଟ ପାତ୍ରଟି ସବୁବେଳେ ଥଣ୍ଡା ରହେ । ପ୍ରାୟ ଭିତରସ୍ଥ ଉତ୍ତାପ ଓ ବାହାର ଉତ୍ତାପ ମଧ୍ୟରେ ଅନ୍ୟୁନ 11° ଡିଗ୍ରୀ ସେଣ୍ଟିଗ୍ରେଡ୍ ତାରତମ୍ୟ ଦେଖାଯାଏ ।

ବାହ୍ୟ ପାତ୍ରର ଗୋଟିଏ ପାର୍ଶ୍ୱର ଉପର ଭାଗରେ ଥିବା ଗର୍ତ୍ତରେ ପାଣି ଢଳାଯାଏ ଏବଂ ଉଭୟ ପାତ୍ର ପାଇଁ ଗୋଟିଏ ଢାଙ୍କୁଣୀ ବ୍ୟବହାର କରାଯାଇ ପାରେ । ଢାଙ୍କୁଣୀର ଉପର ଭାଗରେ ଛୋଟ ଛୋଟ ଛିଦ୍ର କରାଯାଇ ଥାଏ, ଯାହା ଦ୍ୱାରା ଭିତରେ ରଖାଯାଇ ଥିବା ଖାଦ୍ୟ ପଦାର୍ଥର ନିର୍ଗତ ବାଷ୍ପ ବାହାରକୁ ବାହାରିଯାଇ ପାରିବ ।

ଏଥିରୁ ସର୍ବୋତ୍ତମ ଲାଭ ହାସଲ କରିବା ଲାଗି ନିମ୍ନଲିଖିତ ସତର୍କତାମୂଳକ ବ୍ୟବସ୍ଥାମାନ ଗ୍ରହଣ କରିବେ ।

— ଭିତରର ପାତ୍ରକୁ ସଫା ଓ ଶୁଖିଲା ରଖନ୍ତୁ ।

— ଏଥିରେ ବ୍ୟବହାର କରାଯାଉଥିବା ପାଣି ପରିଷ୍କାର ହେବା ଆବଶ୍ୟକ ।

— ବାହ୍ୟ ପାତ୍ରରେ ସର୍ବଦା ପାଣି ଭର୍ତ୍ତି ହୋଇ ରହିବା ଆବଶ୍ୟକ ନଚେତ ଭିତରର ପାତ୍ରଟି ଉତ୍ତପ୍ତ ହୋଇ ଖାଦ୍ୟ ପଦାର୍ଥ ନଷ୍ଟ ହୋଇଯିବ ।

— ପ୍ରତ୍ୟେକ ଦିନ ପାଣି ପରିବର୍ତ୍ତନ କରାଯିବା ଆବଶ୍ୟକ ।

**ମୂଲ୍ୟ** : 25 ରୁ 30 ଟଙ୍କା ଖର୍ଚ୍ଚରେ ଗ୍ରାମର କୁମ୍ଭାର ଦ୍ୱାରା ଏଭଳି ଶୀତଳ ପାତ୍ର ତିଆରି କରାଯାଇ ପାରିବ ।

**ସମ୍ପର୍କ ସ୍ଥାପନ** :
ସିଗ୍ରାମୀଣ୍ ୟୁନିଟ୍
ସେଣ୍ଟର ଅଫ ସାଇନସ୍ ଫର ଭିଲେଜେସ୍
ମଗନ ସଂଗ୍ରହାଳୟ
ଓ୍ୱାର୍ଦ୍ଧା-442 001
ମହାରାଷ୍ଟ୍ର

# କାଠର ମକାଦାନା ଛଡାଇବା ଉପକରଣ




1




2

3




4



ମକାର ଦାନା ଛଡ଼ାଯାଉଛି

# କାଠର ମକାଦାନା ଛଡାଇବା ଉପକରଣ

## ବର୍ଣ୍ଣନା

ପାରମ୍ପରିକ ରୂପେ ଆମେ ନିମ୍ନଲିଖିତ ଉପାୟଗୁଡ଼ିକ ଅବଲମ୍ବନ କରି ମକାରୁ ମକାଦାନା ଛଡ଼ାଇ ଥାଏ—

i) ମକାକୁ ଗୋଟିଏ ହାତରେ ଧରି ଅନ୍ୟ ହାତର ଆଙ୍ଗୁଠି ଓ ନଖ ଦ୍ୱାରା ଗୋଟି ଗୋଟି କରି ଦାନା ଛିଙ୍କି କରି ଅଲଗା କରେ ।

ii) ଦୁଇଟି ମକା ଫସଲକୁ ପରସ୍ପର ସହ ଘଷିକରି କମ୍ବା ବ୍ଲେଡ, ଦାଉ ବା ପଥରରେ ରଗଡ଼ି ମକାଦାନା ବାହାର କରିଥାଏ ।

iii) ମକାର ଖୋସା ପତ୍ରଗୁଡ଼ିକ ବାହାର ନ କରି ଗୋଟିଏ ବସ୍ତା ଭିତରେ ପୂରାଇ ଏକତ୍ର ହେକତ କରି ତଳେ ବାଡ଼ାଇବାକୁ ହୁଏ । ଯାହା ବାହାରି ନ ଥିବା ତାକୁ ହାତରେ ଛଡ଼ାଇବାକୁ ହେବ ।

iv) କାଠ ଓ ବାଉଁଶର ଗୋଟିଏ ଉଚ୍ଚ ଜାଗା ତିଆରି କର । ବାଉଁଶଗୁଡ଼ିକ ମଝିରେ ମଝିରେ ଫାଙ୍କ ଥିବା ଆବଶ୍ୟକ । ତା ଉପରେ ମକାଗୁଡ଼ିକ ଖେଳାଇ କରି ରଖି ବାଡ଼ି ବା ଠେଙ୍ଗାରେ ବାଡେଇବାକୁ ପଡ଼େ । ମାତ୍ର ଫଳରେ ମକାଦାନା ଗୁଡ଼ିକ ଫାଙ୍କ ମଧ୍ୟ ଦେଇ ତଳେ ଏକାଠି ହୁଏ ।

v) ବିଦ୍ୟୁତ ଚାଳିତ ଥ୍ରେସର ଦ୍ୱାରା ।

କେବଳ ହାତରେ ଛଡାଇବା ବ୍ୟତୀତ ଅନ୍ୟସବୁ ଉପାୟରେ ମକା ଦାନା ନଷ୍ଟ ହୋଇଥାଏ । ତଳେ ବର୍ଣ୍ଣିତ ଉପାୟରେ ମକା ଛଡାଇଲେ ଖୁବ କମ୍ ଦାନା ନଷ୍ଟ ହୁଏ ।

କାଠରେ ନିର୍ମିତ ମକା ଦାନା ଛଡାଇବା ଉପକରଣଟି ସ୍ଥାନୀୟ ବଢେଇଙ୍କ ଦ୍ୱାରା ତିଆରି କରିହେବ । 20 ସେ.ମି. ଲମ୍ବ, 7.5 ସେ.ମି. ଚଉଡ଼ା ଓ 2.8 ସେ.ମି. ମୋଟା କାଠ ଏଥିପାଇଁ ଆବଶ୍ୟକ । ଗୋଟିଏ ପାଖରେ 12 ସେ.ମି. ଲମ୍ବର ବେଣ୍ଟ ତିଆରି କରାଯାଏ । ଅନ୍ୟ ପାଖରେ 2.2 ସେ.ମି. ବ୍ୟାସ ବିଶିଷ୍ଟ ଦୁଇଟି ଛିଦ୍ର ତିଆରି କରାଯାଏ । ଦୁଇଟି ଛିଦ୍ରର କେନ୍ଦ୍ର ମଧ୍ୟରେ ଦୂରତ୍ୱ 3.2 ସେ.ମି. ହେବା ଆବଶ୍ୟକ । ଦୁଇଟି ଛିଦ୍ର ମଧ୍ୟସ୍ଥ ଖାଲି ଜାଗା ଖୋଲିକରି କଣାକରି ଦିଆଯାଏ ଯାହା 3.1 ସେ.ମି.ର ବର୍ଗକ୍ଷେତ୍ର ହେବ । ଏହି ଖାଲିସ୍ଥାନ ମଧ୍ୟ ଦେଇ ମକାଟି ବୁଲାଇ ଦାନା ଛଡ଼ାଯାଏ । ବିଭିନ୍ନ ଆକାରର ମକା ଅନୁଯାୟୀ ଭିନ୍ନ ଭିନ୍ନ ମକାଦାନା ଛଡା ଉପକରଣ ବ୍ୟବହାର କରାଯାଏ ।

ଯେଉଁ ଘରମାନଙ୍କର ମକା ନିତିଦିନିଆ ଭୋଜନରେ ବ୍ୟବହାର ହୁଏ ସେମାନଙ୍କ ଲାଗି ଏହି ଉପକରଣଟି ବିଶେଷ ଉପଯୋଗୀ ହେବ ।

**ମୂଲ୍ୟ** : ଅତି ସାମାନ୍ୟ, ଗ୍ରାମର ବଢେଇଙ୍କ ଦ୍ୱାରା ତିଆରି କରାଯାଇ ପାରିବ ।

**ସମ୍ପର୍କ ସ୍ଥାପନ** :
ଗ୍ରାହାମ ପିନ୍ସନ
ଟ୍ରପିକାଲ ପ୍ରଡକ୍ଟସ୍ ଇନଷ୍ଟିଚ୍ୟୁଟ
କୁଲହାମ, ଆବିଙ୍ଗଡନ
ଅକ୍ସଫୋର୍ଡସାୟାର OX 14 3DA
ୟୁନାଇଟେଡ କିଙ୍ଗଡ଼ମ୍

# ବିକଳାଙ୍ଗଙ୍କ ଚାଲିବା ଲାଗି ଫ୍ରେମ




ଫ୍ରେମର ଉଚ୍ଚତା ମାପିବା ପାଇଁ




ଗୋଟିଏ ପାର୍ଶ୍ୱର ଦୃଶ୍ୟ




ସାମନା ପଟର ଦୃଶ୍ୟ

# ବିକଳାଙ୍ଗଙ୍କ ଚାଲିବା ଲାଗି ଫ୍ରେମ

## ବର୍ଣ୍ଣନା

ଏହି ଚାଲିବା ଲାଗି ଫ୍ରେମଟି ଶାରୀରିକ ରୂପେ ଅକ୍ଷମ ବା ବିକଳାଙ୍ଗ ବ୍ୟକ୍ତିଙ୍କୁ ସିଧାଭାବେ ଛିଡ଼ା ହେବାଲାଗି ତଥା ଚାଲିବା ନିମନ୍ତେ ଅଶ୍ରା ଦିଏ । ଶିଶୁମାନଙ୍କ ପାଇଁ ତିନୋଟି ସାଇଜରେ ନିର୍ମାଣ କରାଯାଇଥାଏ । (ଏହି ଫ୍ରେମ ବୟସ୍କମାନେ ମଧ୍ୟ ବ୍ୟବହାର କରିପାରିବେ । କେବଳ ବ୍ୟକ୍ତିଙ୍କ ଉଚ୍ଚତା ଅନୁଯାୟୀ ଫ୍ରେମର ମାପ ବଦଳାଇବାକୁ ହେବ ।)

ଏହି ଫ୍ରେମ 8 ମିଲିମିଟର ବ୍ୟାସ ବିଶିଷ୍ଟ ଧାତବ କମ୍ବା ଲୁହାଛଡ଼ରେ ତିଆରି ହୋଇପାରିବ । (ନିକଟସ୍ଥ ପୃଷ୍ଠାର ଚିତ୍ର 2ରେ ଯେପରି ଦେଖାଯାଇଛି ସେହିପରି ଯୋଡ଼ା ଯାଇପାରିବ) ବିଭିନ୍ନ ତିନୋଟି ବର୍ଗର ପିଲାଙ୍କ ପାଇଁ ଫ୍ରେମ ତିଆରି କରିବା ଲାଗି ବିଭିନ୍ନ ଅଂଶ ନିମନ୍ତେ ଆବଶ୍ୟକ ପଡୁଥିବା ଧାତବ ଛଡ଼ର ମାପ ନିମ୍ନରେ ପ୍ରଦତ୍ତ ହୋଇଛି ।

ମାପ ତାଲିକା ( ସେ. ମି. ରେ )

| ସାଇଜ | | ଏ | ବି | ସି | ଡି | ଇ | X = ମୁଖ୍ୟଭାଗ | ମୋଟ |
|---|---|---|---|---|---|---|---|---|
| ଛୋଟ | * | 40+40 | 15 | 23 | 26 | 26+26 | 133 | 291 |
| ମଧ୍ୟମ | | 56+56 | 20 | 30 | 35 | 35+35 | 182 | 399 |
| ବଡ | | 74+74 | 23 | 30 | 40 | 40+40 | 223 | 491 |

ମୁଖ୍ୟଭାଗକୁ ଚିତ୍ର ଅନୁଯାୟୀ ମୋଡ଼ାଯାଏ ଓ ୱେଲ୍ଡିଙ୍ଗ କରି ଫ୍ରେମକୁ ରଙ୍ଗେଇ ଦିଆଯାଏ ଏବଂ ଏଥିରେ ପ୍ଲାଷ୍ଟିକ୍ ବା ଚମଡ଼ାର ହ୍ୟାଣ୍ଡେଲ ଲଗାଯାଏ ।

**ମୂଲ୍ୟ** : ଆନୁମାନିକ 75 ଟଙ୍କାରୁ 100 ଟଙ୍କା ମଧ୍ୟରେ । ସ୍ଥାନୀୟ କମାର ଦ୍ୱାରା ଫ୍ରେମଟି ତିଆରି କରାଯାଇ ପାରିବ ।

**ସମ୍ପର୍କ ସ୍ଥାପନ** : ସିମ୍ପଲ ଅର୍ଥୋପେଡ଼ିକ୍ ଏଡସ୍ : ଆପ୍ରୋପ୍ରିଏଟ ଡ଼ିଜାଇନସ୍ ଫର ଏ ଡେଭଲପିଙ୍ଗ କଣ୍ଟ୍ରି,
ଲିଓନାର୍ଡ ଚେସାୟାର ଫାଉଣ୍ଡେସନ ଇଣ୍ଟରନ୍ୟାସନାଲ
ଲିଓନାର୍ଡ ଚେସାୟାର ହାଉସ
26-29 ମାଉନସେଲ ଷ୍ଟ୍ରିଟ
ଲଣ୍ଡନ ଏସ୍ ଡବ୍ଲ୍ୟୁ ଆଇ ପି 2 କ୍ୟୁ ଏନ୍
ୟୁନାଇଟେଡ଼ କିଙ୍ଗଡମ୍

* ତିନୋଟି ସାଇଜ ମଧ୍ୟରୁ ଗୋଟିଏ ସାଇଜର ଫ୍ରେମ ଚିତ୍ରରେ ଦର୍ଶାଯାଇଛି

# ସନ୍ଦର୍ଭ


1. ଆର ଟି ଜ-ଟି/1 — ରେଞ୍ଜ ସଖ୍ୟା 2, 1984
2. ଆର ଟି ଜ-ଟି/2 — ଇନଭେନ୍ସନ ଇନ୍ଟେଲିଜେନ୍ସ, ଜୁଲାଇ 1979
3. ଆର ଟି ଜ-ଟି/3 — ଆର ଟି ଜର୍ନାଲ ଜୁନ୍ 1984
4. ଆର ଟି ଜ-ଟି/4 — ସାଇନ୍ସ ଆଣ୍ଡ ଟେକ୍ନୋଲୋଜି ଫର ଓମେନ୍-ଏ ଶ୍ରେଇକଡ଼୍ ଇଲଷ୍ଟ୍ରେଟେଡ୍ ଭର୍ସନ ଅଫ ଦ କମେଣ୍ଡିସ୍ନମ ଅଫ ଟେକ୍ନୋଲୋଜିଜ୍, ଡ଼ି ଏସ୍ ଟି, ନୂଆଦିଲ୍ଲୀ-1983
5. ଆର ଟି ଜ-II/1 — ଆପ୍ରୋପ୍ରିଏଟ ଟେକ୍ନୋଲୋଜି-ଡାଇରେକ୍ଟୋରୀ ଅଫ୍ ମେସିନ୍ସ, ଟୁଲସ, ପ୍ଲାଣ୍ଟସ, ଇକ୍ୟୁପ୍ମେଣ୍ଟସ, ପ୍ରୋସେସେସ୍ ଆଣ୍ଡ ଇଣ୍ଡଷ୍ଟ୍ରିଜ୍, ଏ ଟି ଡ଼ି ଏ, ଲକ୍ଷ୍ନୌ, 1977
6. ଆର ଟି ଜ-II/2 — କ୍ରମସଖ୍ୟା 4 ଅନୁରୂପ
7. ଆର ଟି ଜ-II/3 — ଚମସଖ୍ୟା 4 ଅନୁରୂପ
8. ଆର ଟି ଜ-II/4 — ଇନ୍ଭେନ୍ସନ ଇନ ଟେଲିଜେନ୍ସ ଫେବୃଆରୀ, 1978
9. ଆର ଟି ଜ-II/5 — ଆପ୍ରୋପ୍ରିଏଟ ଭିଲେଜ ଟେକ୍ନୋଲୋଜି ଫର ବେସିକ ସର୍ଭିସେସ୍, ୟୁନିସେଫ୍, ନାଇରୋବ
10. ଆର ଟି ଜ-II/6 — ସାଇନ୍ସ ଫର ଭିଲେଜେସ୍, ଡ଼ିସେମ୍ବର 1982-ଜାନୁଆରୀ 1983
11. ଆର ଟି ଜ-II/7 — ଆପ୍ରୋପ୍ରିଏଟ ଟେକନୋଲୋଜି, ଡ଼ିସେମ୍ବର 1981
12. ଅର ଟି ଜ-II/8 — କ୍ରମସଖ୍ୟା 4 ଅନୁରୂପ
13. ଆର ଟି ଜ-ଏଚ/1 — କ୍ରମସଖ୍ୟା 5 ଅନୁରୂପ
14. ଅର ଟି ଜ-ଏଚ/2 — ଟେକ୍ନୋଲୋଜି ଫର ହ୍ୟୁମାନ୍ ୱେଲ୍ଫେୟାର ଆଣ୍ଡ କମ୍ୟୁନିଟି ସର୍ଭିସେସ୍-ଟେକ୍ନୋଲୋଜି ଫର ରୁରାଲ ଡେଭେଲପ୍ମେଣ୍ଟ ଭଲ୍ୟୁମ୍ 1 ସି ଏସ୍ ଆଇ ଆର, ନୂଆଦିଲ୍ଲୀ, 1984
15. ଅର ଟି ଜ-ଡ଼ି ଆର/1 — କ୍ରମସଖ୍ୟା 4 ଅନୁରୂପ
16. ଅର ଟି ଜ-ଡ଼ି ଆର/2 — ସୋର୍ସ-କନସୋରଟିଅମ୍ ଅନ୍ ରୁରାଲ ଟେକ୍ନୋଲୋଜି (ସି ଓ ଆର ଟି) ନୂଆଦିଲ୍ଲୀ
17. ଅର ଟି ଜ-ଡ଼ି ଆର/3 — ଆପ୍ରୋପ୍ରିଏଟ ଟେକନୋଲୋଜି ମେ 1977
18. ଆର ଟି ଜ-ଇ/1 — ଆପ୍-ଟେକ୍-ନ୍ୟୁଜଲେଟର, ଜାନୁଆରୀ 1984
19. ଆର ଟି ଜ-ଇ/2 — ଗ୍ରାମ ପ୍ରୌଦ୍ୟୋଗିକି, ମାର୍ଚ୍ଚ 1982
20. ଅର ଟି ଜ-ଏଚ ଏନ୍/1 — କ୍ରମସଖ୍ୟା 4 ଅନୁରୂପ
21. ଅର ଟି ଜ ଏଚ ଏନ୍/2 — କ୍ରମସଖ୍ୟା 4 ଅନୁରୂପ
22. ଅର ଟି ଜ-ଏଚ୍ ଏନ୍/3 — କ୍ରମସଖ୍ୟା 4 ଅନୁରୂପ
23. ଆର ଟି-ଜ/1 — ରୁରାଲ ଟେକ୍ନୋଲୋଜି ଗାଇଡ୍-1 ଟ୍ରୋପିକାଲ ପ୍ରଡକ୍ଟସ୍ ଇନଷ୍ଟିଚ୍ୟୁଟ, ଲଣ୍ଡନ, 1977
24. ଅର ଟି ଜ-ଜ/2 — କ୍ରମସଂଖ୍ୟା 4 ଅନୁରୂପ
25. ଅର ଟି ଜ-ଜ/3 — ରେଞ୍ଜ, ସଖ୍ୟା 1, 1984



ମୁଦ୍ରିତ : ପଦ୍ମା ପ୍ରିଣ୍ଟର୍ସ, 400-A, ମୁନିରକା ମାର୍କେଟ, ନଇ ଦିଲ୍ଲୀ-110067, ଫୋନ : 657660